# ଉମେଶଚରଣ ସ୍ମରଣେ

( ଦ୍ୱାଦଶାବ୍ଦ ଶ୍ରାଦ୍ଧବାସର ଉପଲକ୍ଷେ )

ସଂପାଦନା :
ଡକ୍ଟର ସୁଦର୍ଶନ ଆଚାର୍ଯ୍ୟ
ମୁଖ୍ୟ ଉପଦେଷ୍ଟା : ଫଲ୍‌ଗୁ ସାହିତ୍ୟ ସଂସଦ

ଉମେଶଚରଣ ସ୍ମୃତି ସମିତି
୧, ଅଶୋକ ନଗର, ବ୍ରହ୍ମପୁର

# ୰ ଉମେଶ ଚରଣ ପାଢ଼ୀ

ଆବିର୍ଭାବ : ୧୯୩୭ ଜୁଲାଇ ୧୫ ତାରିଖ

ତିରୋଧାନ : ୧୯୯୮ ସେପ୍‌ଟେମ୍ବର ୨୮ ତାରିଖ

ଜନ୍ମ —ଚିକିଟୀ ଲୋକନାଥପୁର ଶାସନ

ପ୍ରାଥମିକ ଶିକ୍ଷା —ଗଞ୍ଜାମ, ଚିକିଟୀ (୧୯୪୨-୪୭)

ହାଇସ୍କୁଲ —ଚିକିଟୀ, ନୂଆପଡ଼ା (୧୯୪୭-୫୩)

ଇଂଜିନିୟରିଂ ସ୍କୁଲ —କଟକ (୧୯୫୩-୫୮)

କର୍ମମୟ ଜୀବନ ଆରମ୍ଭ- (୧୯୫୮, ଡିସେମ୍ବର ୩)

ବିବାହ — (୧୯୬୦ ଜୁଲାଇ, କନିସି ନିକଟସ୍ଥ ପଦ୍ମପୁରର ଶ୍ରୀ ମଙ୍ଗୁଳୁ ଚରଣ ସାମନ୍ତରାୟଙ୍କ କନ୍ୟା ଇନ୍ଦିରାଙ୍କ ସହ)

କର୍ମକ୍ଷେତ୍ରରୁ ଅବସର— (୧୯୯୫, ଜୁଲାଇ ୩୧)

## ଉମେଶଚରଣ ସ୍ମୃତି ସମିତି

ସର୍ବଶ୍ରୀ ବସନ୍ତକୁମାର ପାଣିଗ୍ରାହୀ

ଡକ୍ଟର ସୀତାରାମ ମହାପାତ୍ର

ଡକ୍ଟର ନିଖିଳାନନ୍ଦ ପାଣିଗ୍ରାହୀ

ଡକ୍ଟର ସୁଦର୍ଶନ ଆଚାର୍ଯ୍ୟ

ଡକ୍ଟର ସୂର୍ଯ୍ୟନାରାୟଣ ଦାସ

ରଘୁନନ୍ଦନ ପାଣିଗ୍ରାହୀ

ଡକ୍ଟର ସୁରେଶ ପାଣିଗ୍ରାହୀ

ଭାସ୍କରଚନ୍ଦ୍ର ପାତ୍ର

ଭଗବାନ ପାଢ଼ୀ

ଅଭିମନ୍ୟୁ ପାଢ଼ୀ

ସିଦ୍ଧାର୍ଥଶଙ୍କର ପାଢ଼ୀ



# ସଂପାଦକୀୟ

'ଥିଲା ଯାଏ ଛିଣ୍ଡା କନା, ହଜିଗଲେ ମାଠ' । ଉମେଶଚରଣ ପାଢ଼ୀ ଅକାଳରେ ମୃତ୍ୟୁ ବରଣ କଲା ପରେ ତାଙ୍କ ସଂସ୍ପର୍ଶରେ ଆସିଥିବା ସମସ୍ତେ ତାଙ୍କୁ ଝୁରୁଛନ୍ତି । ମିତ୍ର-ମାନେ କହୁଛନ୍ତି ବନ୍ଧୁପରି ବନ୍ଧୁଟିଏ ଥିଲା । ଶତ୍ରୁମାନେ କହୁଛନ୍ତି ଶତ୍ରୁ ପରି ଶତ୍ରୁଟିଏ ଥିଲା । ସମସ୍ତଙ୍କ ମୁହଁରେ ଗୋଟିଏ କଥା ଉମେଶଚରଣ ଏକ ଅନନ୍ୟ ପ୍ରତିଭା । ବନ୍ଧୁ ଗହଣରେ ସେ ଥିଲେ ହାସ୍ୟ ଓ ଲାସ୍ୟପ୍ରିୟ ଉମା ଏବଂ ଶତ୍ରୁ ସମ୍ମୁଖରେ ତାଣ୍ଡବପ୍ରିୟ ପ୍ରଚଣ୍ଡ ଉମେଶ । ଚଷମା ପିନ୍ଧିଲେ ଉମେଶ, ଚଷମା ବାହାର କରିଦେଲେ ଉମା । ଉପରିସ୍ଥ କର୍ମଚାରୀ ତେଣୁ ଥରେ ତାଙ୍କ ଚରିତ୍ର ପଞ୍ଜିକାରେ ଲେଖି-ଥିଲେ, 'Padhy is sobre under his spectacles'.

ପାଢ଼ୀବାବୁଙ୍କ ମୃତ୍ୟୁ ଖବର ପ୍ରଚାରିତ ହେବା ସଙ୍ଗେ ସଙ୍ଗେ ସମସ୍ତେ ନିଜ ନିଜ ଅନୁଭୂତି ଉଖାରି ବସିଲେ । ଏସବୁକୁ ନେଇ 'ସ୍ମରଣିକା'ଟିଏ ପ୍ରକାଶ କରିବାର ଯୋଜନା ହେଲା । ତାଙ୍କ ପୁସ୍ତକଗୁଡ଼ିକର ପ୍ରକାଶକ ଶ୍ରୀଯୁକ୍ତ ଭଗବାନ ପାଢ଼ୀ, ଶ୍ରୀଯୁକ୍ତ ଭାସ୍କରଚନ୍ଦ୍ର ପାତ୍ର, ଶ୍ରୀଯୁକ୍ତ ଅଭିମନ୍ୟୁ ପାଢ଼ୀ ଛାତ୍ର ଓ ବନ୍ଧୁ ଡଃ ସୂର୍ଯ୍ୟନାରାୟଣ ଦାସ,ରଘୁନନ୍ଦନ ପାଣିଗ୍ରାହୀ, ଡଃ ସୁରେଶଚନ୍ଦ୍ର ପାଣିଗ୍ରାହୀ ପ୍ରମୁଖ ଏ ଦିଗରେ ଆଗେଇ ଆସିଲେ । ଅଯାଚିତ ଭାବେ ଗୋଟିଏ ପରେ ଗୋଟିଏ ଲେଖା ଆସିଗଲା । କିନ୍ତୁ ଦଶହରା ଓ କୁମାର ପୂର୍ଣ୍ଣିମା ପାଇଁ ପ୍ରେସ୍ ସବୁ ବନ୍ଦ । ତଥାପି ସମସ୍ତେ ଅଣ୍ଟା ଭିଡ଼ିଲେ । ସ୍ମରଣିକାଟିଏ ସମ୍ଭବ ହେଲା । କିଛି ଲେଖା ବି ରହିଗଲା ।

ଉମେଶଚରଣଙ୍କ ଶ୍ରାଦ୍ଧକ୍ରିୟା ତାଙ୍କର ଏକମାତ୍ର ପୁତ୍ର ଇଂଜିନିୟର ଅଶେଷକୁମାର ପାଢ଼ୀଙ୍କ ହୀରାକୁଦ ବାସଭବନରେ ଅନୁଷ୍ଠିତ ହେଉଛି । ତିନି ଝିଅ କୁନି, ଲିଲି, ଟିକିନା ସେଠି ।

ଏଣୁ ସେମାନଙ୍କ ପ୍ରତ୍ୟକ୍ଷ ସହଯୋଗ ସମ୍ଭବ ହେଲା ନାହିଁ, ବହୁ କଥା ଅକୁହା ରହିଗଲା । ପାଠକ ପାଠିକାଙ୍କ ଠାରୁ ଆସିଥିବା ବହୁ ଚିଠି ପେଡ଼ି ଭିତରେ ପଡ଼ିରହିଲା । କିନ୍ତୁ ବ୍ରହ୍ମପୁର ହିଁ ତାଙ୍କ କର୍ମକ୍ଷେତ୍ର । କର୍ମମୟ ଜୀବନର ଅଧିକାଂଶ ସମୟ ସେ ଏଠି ଅତିବାହିତ କରିଛନ୍ତି । ଅବସରର ଦିନ-ଗୁଡ଼ିକ ଏଠି କଟାଇବେ ବୋଲି ଘରଟିଏ ବି କରିଛନ୍ତି । ଏଣୁ ତାଙ୍କ ମୃତ୍ୟୁର ଦ୍ୱାଦଶ ଦିବସରେ ଏଠାରେ ହିଁ ସ୍ମୃତି ସଭଟିଏ କରି 'ସ୍ମରଣିକା'ଟିଏ ପ୍ରକାଶ କରଯାଉଛି ।

ସମୟର ସ୍ୱଳ୍ପତା ଦୃଷ୍ଟିରୁ ଉମେଶଚରଣଙ୍କ ବନ୍ଧୁ, ଶୁଭେଚ୍ଛୁ ଓ ପରିବାରବର୍ଗ ସ୍ମରଣିକାଟିରେ ଥିବା ଅସମ୍ପୂର୍ଣ୍ଣତା ଓ ତ୍ରୁଟି ପାଇଁ କ୍ଷମା ଦେବେ ।

ଉମେଶଚରଣଙ୍କ ଆତ୍ମାର ସଦ୍‌ଗତି କାମନା କରିବା ସହ ଆମେ ତାଙ୍କ ଅଶ୍ରୁତପ୍ତ ପରିବାରବର୍ଗଙ୍କ ପ୍ରତି ସମବେଦନା ଜ୍ଞାପନ କରୁଛୁ ।

ବ୍ରହ୍ମପୁର, ସମ୍ପାଦକ
ତା ୯-୧୦-୧୯୯୮

# ଶୋକ ବାର୍ତ୍ତା

ଶ୍ରୀଯୁକ୍ତ ଉମେଶଚରଣ ପାଢ଼ୀ ମୋର ଅତ୍ୟନ୍ତ ଘନିଷ୍ଠ ବନ୍ଧୁ ଥିଲେ । ଯଦିଓ ସେ ମୋ' ବିଭାଗରେ ଜୁନିୟର ଇଞ୍ଜିନିୟର ଭାବେ କାମ କରୁଥିଲେ, ମୁଁ ନିଜକୁ ଅଧିକାଂଶ ହିସାବରେ ବ୍ୟବହାର କରୁନଥିଲି । ତାଙ୍କର ଇଞ୍ଜିନିୟରିଂ ବିଷୟରେ ଅତ୍ୟନ୍ତ କୁଶଳତା ଥିଲା । ତା' ସଙ୍ଗେ ସଙ୍ଗେ ସେ ଜ୍ୟୋତିଷ, ସାହିତ୍ୟ ଇତ୍ୟାଦି ଭଲ ଭାବେ ଜାଣିଥିଲେ । ତାଙ୍କର ଅକାଳ ମୃତ୍ୟୁରେ ମୁଁ ଅତ୍ୟନ୍ତ ଦୁଃଖିତ ଓ ମର୍ମାହତ ହୋଇ-ପଡ଼ିଛି । ଭଗବାନ ତାଙ୍କ ଆତ୍ମାର ସଦ୍‌ଗତି କରନ୍ତୁ ।


ଇଂ. କେ.ବି. ସୁନ୍ଦରୀ<br>
ଅବସର ପ୍ରାପ୍ତ ଇଂଜିନିୟର–ଇନ୍–ଚିଫ୍<br>
ଜଳସେଚନ ବିଭାଗ, ଓଡ଼ିଶା


# ଶୋକ ବାର୍ତ୍ତା

ସ୍ୱର୍ଗତ ଉମେଶଚରଣ ପାଢ଼ୀଙ୍କୁ ମୁଁ ଗତ ୩୦ ବର୍ଷ ହେଲା ଭଲଭାବେ ଜାଣେ । ସେ ଜଣେ ସୁସାହିତ୍ୟିକ ଓ ସାହିତ୍ୟ ସମାଲୋଚକ ଭାବେ କଳିଙ୍ଗ ସାହିତ୍ୟ ସମାଜର ବହୁ ଆଲୋଚନା ସଭାରେ ଯୋଗଦାନ କରୁଥିଲେ । ସେ ଯାହା କରିବାକୁ ଚାହୁଁଥିଲେ ତାହା ଦୃଢ଼ତାର ସହିତ କରୁଥିଲେ । କୌଣସି ସାଲିସ୍ କରିବା ପାଇଁ ସେ ପ୍ରସ୍ତୁତ ନଥିଲେ । ସେ ଯାହା କହିବାକୁ ଚାହୁଁଥିଲେ ତାହା ସ୍ପଷ୍ଟ ଓ ନିର୍ଭୀକ ଭାବରେ କହୁଥିଲେ । ତାଙ୍କ ବିୟୋଗରେ ଓଡିଶା ଜଣେ ବିଶିଷ୍ଟ କଥାକାର ଓ ଗବେଷକଙ୍କୁ ହରାଇଲା ।

ତାଙ୍କର ଆକସ୍ମିକ ବିୟୋଗରେ 'କଳିଙ୍ଗ ସାହିତ୍ୟ ସମାଜର' ସମସ୍ତ ସଦସ୍ୟ ମର୍ମାହତ । ଭଗବାନ ତାଙ୍କ ଆତ୍ମାର ସଦ୍‌ଗତି କରନ୍ତୁ ।


ବସନ୍ତକୁମାର ପାଣିଗ୍ରାହୀ<br>
ମହାସଚିବ, ଉତ୍କଳ ସମ୍ମିଳନୀ

# ପାଢ଼ୀବାବୁ ସ୍ମରଣେ

ଉମେଶଚରଣ ପାଢ଼ୀଙ୍କ ସହିତ ମୋର ପରିଚିତି ଦୀର୍ଘ ୩୦ ବର୍ଷର । ସେହି ଦିନରୁ ତାଙ୍କ ବ୍ରହ୍ମପୁର ଅବସ୍ଥାନ ସମୟରେ ପ୍ରତିଦିନ ଦେଖାହେଉଥିଲୁ । ପ୍ରତ୍ୟହ ଆମ ଦୋକାନକୁ ସେ ନିଶ୍ଚିତ ଭବେ ଆସିବେ । ଏଠାରେ ନିତି ପଞ୍ଚସଖାଙ୍କ ମିଳନ— ଡଃ ସୁଦର୍ଶନ ଆଚାର୍ଯ୍ୟ, ଡଃ ସୂର୍ଯ୍ୟନାରାୟଣ ଦାସ,ରଘୁନନ୍ଦନ ପାଣିଗ୍ରାହୀ ଓ ପାଢ଼ୀବାବୁ । ସେ ଯେତେବେଳେ ଆମ ଦୋକାନକୁ ଆସନ୍ତି, ପ୍ରତ୍ୟହ ସାହିତ୍ୟ, ସଙ୍ଗୀତ ଓ ବନ୍ଧୁମାନଙ୍କର ସାହିତ୍ୟ କୃତି ସମ୍ପର୍କରେ ଆଲୋଚନା ହୁଏ । ଆଲୋଚନା ବେଳେ କୌଣସି କାରଣରୁ ସେ ଉତ୍କ୍ଷିପ୍ତ ହୋଇଉଠିଲେ ମୁଁ କିଶୋରଚନ୍ଦ୍ରାନନ୍ଦ ଚମ୍ପୂରୁ ପଦେ ଗାଇଦିଏ "କି ହେଲାରେ କହିତ ନୁହଇ ଭରତାରେ"। ତା'ପରେ ପୁଣି ହସ ଖୁସି । ସବୁ ଶାନ୍ତ ।

ପ୍ରକୃତରେ କହିବାକୁ ଗଲେ ନିଜ ନିଜର ସୁଖ ଦୁଃଖ ଆଲୋଚନା ପାଇଁ ସେ ମୋର ପ୍ରକୃତ ବନ୍ଧୁ । ମୋର ଦୁଃଖରେ ସେ ମର୍ମାହତ, ସୁଖରେ ଆନନ୍ଦିତ । ଏଣୁ ସୁଖ ଓ ଦୁଃଖରେ ଭାଗନେବା ବନ୍ଧୁମାନଙ୍କ ମଧ୍ୟରୁ ସେ ଜଣେ । ଦୀର୍ଘ ୩୦ ବରଷ ହେଲା ଆମ ଦୁହିଁଙ୍କର ମନ ଓ ହୃଦୟ ଏକ ବୋଲି କହିଲେ ଅତ୍ୟୁକ୍ତି ହେବ ନାହିଁ । ଅର୍ଥାଭବ ସମୟରେ ପରସ୍ପର ସାହାଯ୍ୟ ଦିଆନିଆ ମଧ୍ୟ ହେଉଥିଲୁ ।

ଜ୍ୟୋତିଷ ସମ୍ପର୍କରେ ଯେତେବେଳେ 'ଓଡ଼ିଶା ବୁକ୍ ଷ୍ଟୋର,'କଟକରୁ ଦୁଇଟି ବହି ପ୍ରକାଶିତ ହେଲା, ସେତେବେଳେ ସେ ମୋତେ ମଧ୍ୟ "ଜ୍ୟୋତିଷ ରତ୍ନ" ନାମକ ଗୋଟିଏ ବହି ପ୍ରକାଶ କରିବା ପାଇଁ ସୁଯୋଗ ଦେଇଥିଲେ । ଏହା ବ୍ୟତୀତ ଦୁଇଟି ଉପନ୍ୟାସ – ଅଶ୍ରୁଟୀକା, ଘୁମନ୍ତ ନୀଳିମା ଏବଂ ଗଳ୍ପ ସଙ୍କଳନ ରଜନୀଗନ୍ଧାର ପ୍ରଶ୍ନ ମଧ୍ୟ ପ୍ରକାଶ କରିପାରିଛି ।

ଶ୍ରୀ ଜଗନ୍ନାଥ ତାଙ୍କ ଆତ୍ମାକୁ ଶାନ୍ତି ପ୍ରଦାନ କରନ୍ତୁ ଓ ତାଙ୍କ ପରିବାରକୁ ଧୈର୍ଯ୍ୟ ଦିଅନ୍ତୁ ।

ଭାସ୍କରଚନ୍ଦ୍ର ପାତ୍ର
ବିଜୟ ବୁକ୍‌ଷ୍ଟୋର୍, ବ୍ରହ୍ମପୁର-୧

## ।। ଶୋକବାର୍ତ୍ତା ।।

ଗତ ମାସ ୨୮ ତାରିଖ ସୋମବାର ଦିନ ମୋର ଜଣେ ରକ୍ତ ସମ୍ପର୍କୀୟ କନିଷ୍ଠ ବନ୍ଧୁ ଶ୍ରୀ ଉମେଶଚରଣ ପାତ୍ରୀଙ୍କ ଅକାଳ ବିୟୋଗ କଥା ଶୁଣି କି ପ୍ରକାର ମୁଁ ମର୍ମାହତ, ତାହା ପ୍ରକାଶ କରିବାର ଭାଷା ନାହିଁ । ଏତେ ଶୀଘ୍ର ଏଭଳି ବୟସର ପ୍ରତିଭମାନଙ୍କ ତିରୋଧାନ ଜାତି ଓ ଦେଶ ପକ୍ଷରେ ଅତ୍ୟନ୍ତ କ୍ଷତିକାରକ କହିବା ନିଷ୍ପ୍ରୟୋଜନ । ଉମା ଥିଲା, ଜଣେ ଉତ୍ସାହୀ ଏବଂ ଦେଶପ୍ରେମୀ କବି, ଲେଖକ, ଔପନ୍ୟାସିକ ଏବଂ ବରିଷ୍ଠ ଚିନ୍ତକ । ତାର ଭାବନା ଥିଲା ଅତି ଉଚ୍ଚମାନର । ଜଣେ ଇଞ୍ଜିନିୟର ଭାବେ ଭୌତିକ ଜ୍ଞାନରେ ଯେପରି ସେ ଥିଲେ ଜଣେ ସୁଯୋଗ୍ୟ କର୍ମନିଷ୍ଠ, ସେପରି ମାନସିକ ସ୍ତରରେ ତାର ଥିଲା ଅପୂର୍ବ ଜ୍ଞାନ ପିପାସା । ସେ ଥିଲା ଆଧୁନିକ ଯୁଗ ସମ୍ପ୍ରଦାୟର ଜଣେ ଆଦର୍ଶ ପୁରୁଷ । ସେ ମୋର କନିଷ୍ଠ ଭ୍ରାତୃ ପ୍ରତିମ କେବଳ କଥାରେ ନୁହେଁ, ପାରିବାରିକ ସମ୍ପର୍କରେ ମଧ୍ୟ । ଏପରି ଜଣେ ସୁଯୋଗ୍ୟ ବ୍ୟକ୍ତିର ଅକାଳ ବିୟୋଗ ମୋ ମନରେ ବି ଆଘାତ ଦେଉଛି, ତାହା ମୁଁ ଏକା ଜାଣେ । ଯେଉଁମାନେ ମୋ ପାଇଁ ବାର୍ତ୍ତା ଲେଖନ୍ତେ, ସେମାନଙ୍କ ପାଇଁ ମୋତେ ତାହା ଲେଖିବାକୁ ପଡୁଛି, ଏହାଠୁ ବଳି ଦୁଃର୍ଭାଗ୍ୟର କଥା ଆଉ କଣ ଆଇପାରେ । ତଥାପି ଦୈବର ଲୀଳା ଅଗୋଚର । ତାହା ଯେତେ ଆଘାତ ଦାୟୀ ହେଲେ ସୁଦ୍ଧା ଆମେ ସହ୍ୟ କରିବାକୁ ପଡିବ । ସେଇତକ ସାନ୍ତ୍ୱନା ଛଡା ଆମ ପାଖରେ ଆଉ କୌଣସି ଉପାୟ ନାହିଁ । ଜଗନ୍ନାଥ କରନ୍ତୁ, ତାଙ୍କ ଆତ୍ମା ସଦ୍‌ଗତି ଲଭ କରୁ ଏବଂ ଏହି ଦାରୁଣ ଦୁଃଖ ସହ୍ୟ କରିବାକୁ ତାଙ୍କ ପରିବାରକୁ ଶକ୍ତିଦାନ କରନ୍ତୁ ।

**ବେଣୀମାଧବ ପାଢ଼ୀ**
ତା ୨.୧୦.୯୮

# ।। ଶୋକବାର୍ତ୍ତା ।।

ଆଜି ସନ୍ଧ୍ୟାରେ ବନ୍ଧୁ ରଘୁନନ୍ଦନ ବାବୁଙ୍କଠାରୁ ଏକ ଦାରୁଣ ଦୁଃସମ୍ବାଦ ପାଇଲି । ଉମେଶଚରଣ ପାତ୍ରୀ, ସହକାରୀ ଯନ୍ତ୍ରୀ ତଥା ଉମା ଭଇନାର ଅକାଳ ବିୟୋଗ ହେବା ଶୁଣି ମୁଁ ଅତ୍ୟନ୍ତ ମର୍ମ୍ମାହତ ହେଲି । ଠିକ୍ ସବୁ କଥା ଆଖି ଆଗରେ ନାଚୁଚି । କିନ୍ତୁ ମୁଁ ବର୍ତ୍ତମାନ ଅକର୍ମଣ୍ୟ ଓ ଅସୁସ୍ଥ । ଏଣୁ ଯାଇ ପାରୁ ନାହିଁ । ତେବେ 'ବିଜୟ ବୁକ୍ ଷ୍ଟୋର' ନିକଟରେ ଏବଂ ଅନ୍ୟାନ୍ୟ ସ୍ଥାନରେ ଉମେଶଚରଣ ପାତ୍ରୀଙ୍କ ସହିତ ମୋର ବିଭିନ୍ନ ରକମର ଘଣ୍ଟା ଘଣ୍ଟା ଧରି ବାର୍ତ୍ତାଳାପ ଚାଲେ । ସେ ଜଣେ ବିଚିତ୍ର ଲୋକ । ଜ୍ୟୋତିଷ ବିଦ୍ୟାଠୁ ଆରମ୍ଭ କରି, ଚଳଚ୍ଚିତ୍ର ପ୍ରଯୋଜନା ଯାଏ ଏବଂ ଉପନ୍ୟାସ, ଗଳ୍ପର ସ୍ରଷ୍ଟାଠାରୁ ଶ୍ରମିକ ନେତାଯାଏ ତାଙ୍କର ପ୍ରବେଶ ଏବଂ ପ୍ରତିଷ୍ଠାରେ ବୈଚିତ୍ର୍ୟ ଦେଖିବାକୁ ମିଳୁଥିଲା । ଏଭଳି ଜଣେ ବିଚିତ୍ର କରିତ୍‌କର୍ମା ଲୋକ ସାମ୍ପ୍ରତିକ ସମାଜରେ ଦେଖିବାକୁ ବିରଳ । ଗଞ୍ଜାମର ଚିକିଟି ମାଟିର ଗୌରବ ତାଙ୍କର କର୍ମମୟ ଜୀବନର ଛତ୍ରେ ଛତ୍ରେ ଦେଖିବାକୁ ମିଳୁଥିଲା । ଆଉ ବିଶେଷ ମୁଁ ଲେଖିପାରୁ ନାହିଁ; ଭଗବାନ କରନ୍ତୁ ତାଙ୍କର ଅମର ଆତ୍ମା ଶାନ୍ତିରେ ରହୁ ।

**ସୀତାରାମ ମହାପାତ୍ର**
ଅବସରପ୍ରାପ୍ତ ଓଡ଼ିଆ ପ୍ରଫେସର,
ବ୍ରହ୍ମପୁର ବିଶ୍ୱବିଦ୍ୟାଳୟ
ତା ୨-୧୦-୧୯୯୮

# ॥ ଶୋକବାର୍ତ୍ତା ॥

ଫଲ୍‌ଗୁ ସାହିତ୍ୟ ସଂସଦର ଆଦ୍ୟ ଅବସ୍ଥାରେ ଅଗ୍ରଜ ଶ୍ରୀ ଉମେଶଚରଣ ପାତ୍ରୀ ଯେତିକି ସହଯୋଗ ଓ ରଚନାତ୍ମକ ସମର୍ଥନ ଆମକୁ ଅକୁଣ୍ଠ ଚିତ୍ତରେ ଯୋଗାଇ ଦେଇଥିଲେ—ତାହା ଆମ ସଂସ୍ଥା ପାଇଁ ଅବିସ୍ମରଣୀୟ । ସେ ସର୍ବଦା କର୍ମଚଞ୍ଚଳ ଓ ଉତ୍ସାହର ଉତ୍ସ ଥିଲେ । ସମସ୍ତଙ୍କୁ କର୍ମଠ କରିବା ପାଇଁ ତାଙ୍କ ବ୍ୟକ୍ତିତ୍ୱରେ ରହିଥିବା ପ୍ରତିଭା ଅନସ୍ୱୀକାର୍ଯ୍ୟ ।

ଜଣେ ବିଶିଷ୍ଟ ଯନ୍ତ୍ରୀ ହେବା ସହିତ ସେ ଯେମିତି ଜ୍ୟୋତିଷ ଶାସ୍ତ୍ର ପ୍ରତି ଅନୁରକ୍ତ ଥିଲେ ଏବଂ କାର୍ଯ୍ୟ କ୍ଷେତ୍ରରେ ବ୍ୟସ୍ତତା ସତ୍ତ୍ୱେ ସାହିତ୍ୟ ଓ ଜ୍ୟୋତିଷ ଶାସ୍ତ୍ରର ବିକାଶ ଦିଗରେ ନିଜର ଅଦମ୍ୟ ଚେଷ୍ଟାରୁ ଆଜୀବନ ବିରତ ହୋଇ ନ ଥିଲେ—ତାହା ଉଲ୍ଲେଖନୀୟ । ନିଜ ଲେଖନୀ ଓ ବକ୍ତୃତା ମାଧ୍ୟମରେ ଜଟିଳ ବୈଜ୍ଞାନିକ ତଥ୍ୟାବଳୀକୁ ଅତି ସରଳ, ସହଜ ଓ ବୋଧଗମ୍ୟ ଭାଷାରେ ବିଭିନ୍ନ ଦୃଷ୍ଟାନ୍ତ ସହିତ ସର୍ବସାଧାରଣଙ୍କୁ ଅବଗତ କରାଇବାରେ ସେ ଦକ୍ଷ ଥିଲେ ।

ତାଙ୍କର ଅପ୍ରତ୍ୟାଶିତ ବିୟୋଗରେ ସାହିତ୍ୟ, ବିଜ୍ଞାନ ଓ ଶିଳ୍ପ କ୍ଷେତ୍ରରେ ଜଣେ ନିଷ୍ଠାପର ସାଧକ ଆମ ଗହଣରୁ ହଠାତ୍ ଅପସରି ଯିବା ଯୋଗୁଁ ଆମେ ମର୍ମାହତ । ତାଙ୍କର ବହୁବିଧ ରଙ୍ଗୀନ ସ୍ମୃତି ଆମକୁ ବିଭିନ୍ନ କ୍ଷେତ୍ରରେ ଆଗେଇ ନେବ ବୋଲି ଆମେ ଆଶା କରୁଁ ଏବଂ ତାଙ୍କର ଅମର ଆତ୍ମାର ଚିର ଶାନ୍ତି ପାଇଁ ଆମେ ଭଗବାନଙ୍କ ନିକଟରେ ପ୍ରାର୍ଥନା କରୁ ।

**ନିଖିଳାନନ୍ଦ ପାଣିଗ୍ରାହୀ**
ସଭାପତି, ଫଲ୍‌ଗୁ ସାହିତ୍ୟ ସଂସଦ
ବ୍ରହ୍ମପୁର

## ।। ଶୋକବାର୍ତ୍ତା ।।

ସ୍ୱର୍ଗତ ଉମେଶ ବାବୁଙ୍କ ସଙ୍ଗରେ ଦୀର୍ଘ ୩୦ ବର୍ଷ ତଳୁ ମୋର ପରିଚିତ । ସେ ଅତ୍ୟନ୍ତ ମେଳାପୀ, ହସ ହସ ମୁହଁ ଏବଂ ପରୋପକାରୀ ବନ୍ଧୁ । ତାଙ୍କର ଉପନ୍ୟାସଠାରୁ ଆରମ୍ଭ କରି ଜ୍ୟୋତିଷ, ପୁରାଣ, ସମୁଦ୍ର ବିଜ୍ଞାନ ଓ ସାହିତ୍ୟରେ ପ୍ରବେଶ । କିନ୍ତୁ ନିଜର ଜୀବିକା ଇଂଜିନିୟରିଙ୍ଗ୍ ଭାବିଲେ ଆଶ୍ଚର୍ଯ୍ୟ ଲାଗେ, କିପରି ଏ ସମସ୍ତ ବିଜ୍ଞାନର ସମନ୍ୱୟ କରିପାରିଲେ ।

ସେ ମୋର ସମବୟସ୍କ । ଆମକୁ ନୋଟିସ ନ ଦେଇ ଆଗରୁ ଚାଲିଗଲେ । ଏଥିରେ ବନ୍ଧୁ ହିସାବରେ କିଭଳି ଦୁଃଖ ବା ଅନୁଶୋଚନା କରିବି ଏହା ମୋର ଚିନ୍ତା ବହିର୍ଭୂତ । ତାଙ୍କର ଆତ୍ମା ନିଶ୍ଚୟ ସଦ୍‌ଗତି ଲାଭ କରିବ ବୋଲି ବିଶ୍ୱାସ । ତାଙ୍କର ପରିବାରବର୍ଗଙ୍କୁ ଏହି ଦାରୁଣ ପରିସ୍ଥିତିର ସମ୍ମୁଖୀନ ହେବା ନିମନ୍ତେ ପରମେଶ୍ୱର ସାହସ ଦିଅନ୍ତୁ, ଏତିକି ମୋର ପ୍ରାର୍ଥନା ।

**ସୂର୍ଯ୍ୟନାରାୟଣ ମହାପାତ୍ର**
ଅବସରପ୍ରାପ୍ତ ନିର୍ଦ୍ଦେଶକ
ରପ୍ତାନୀ ଉନ୍ନୟନ ଓ ବିପଣନ
ତଥା
ଅତିରିକ୍ତ ଶାସନ ସଚିବ, ଶିଳ୍ପବିଭାଗ
ଭୁବନେଶ୍ୱର

# ଶୋକବାର୍ତ୍ତା

'ଆମ ନେହେରୁ'ର ରୂପକାର ସାହିତ୍ୟିକ ଉମେଶଚରଣ ଓଡ଼ିଶାର ପ୍ରବୀଣ ଓ ସ୍ୱନାମଧନ୍ୟ ବାଣୀପୁତ୍ରମାନଙ୍କ ମଧ୍ୟରୁ ଅନ୍ୟତମ । ତାଙ୍କର ସାଧନା ଦୀର୍ଘକାଳ –ବ୍ୟାପୀ–ସିଦ୍ଧି ମଧ୍ୟ ପ୍ରଚୁର । 'ଘୁମନ୍ତ ନୀଳିମା' କିମ୍ବା 'ରଜନୀ ଗନ୍ଧାର ପ୍ରଶ୍ନ' ପାଠକ ପ୍ରାଣରେ ଯେଉଁ ସ୍ୱତଃସ୍ଫୂର୍ତ୍ତ ଆବେଗ ଓ ପ୍ରଣୟ ମୂର୍ଚ୍ଛନା ସୃଷ୍ଟି କରେ ତାହା ଗମ୍ଭୀର ଓ ଅମ୍ଳାନ । ବୃତ୍ତିରେ ସେ ଇଞ୍ଜିନିୟର କିନ୍ତୁ ଅଦମ୍ୟ ସାହିତ୍ୟ ଲାଳସା ତାଙ୍କୁ କରି–ଦେଇଥିଲା ପ୍ରମତ୍ତ ପାଗଳ । ସେ କାବ୍ୟ, କବିତା, ଉପନ୍ୟାସ, ଗଳ୍ପ, ଜ୍ୟୋତିଷ ଶାସ୍ତ୍ର ଲେଖିଛନ୍ତି । ଲେଖିଛନ୍ତି ବହୁ ଲୁକ୍‌କାୟିତ ତଥ୍ୟ ସମ୍ବଳିତ ଗବେଷଣାତ୍ମକ ନିବନ୍ଧ । ଚଳଚ୍ଚିତ୍ର ଲେଖିଛନ୍ତି । ଏ ସକଳ ପ୍ରତିଭାର ମଧୁର ସମନ୍ୱୟ ତାଙ୍କଠାରେ କିପରି ସମ୍ଭବ ହୋଇପାରିଲା, ତାହା ଭାବିଲେ ଆଶ୍ଚର୍ଯ୍ୟ ଲାଗେ । ପ୍ରକୃତରେ ସେ ଥିଲେ ଏ ଜାତିର ଜଣେ ଦରଦୀ ମଣିଷ । ସମାଜର ଶୋଷିତ, ଲାଞ୍ଛିତ, ଦଳିତଙ୍କ ପାଇଁ ତାଙ୍କ ପ୍ରାଣ ବିଦ୍ରୋହ କରିଛି । ଜୀବନସାରା ମାନବିକତାର ସେ ଯଶଗାନ କରିଥିଲେ । ଅଥଚ ଏ ସମାଜ ତାଙ୍କୁ କିଛି ଦେଇନାହିଁ । ତାଙ୍କ ଭଳି ଜଣେ ବିଶିଷ୍ଟ ପ୍ରତିଭାଧର ଏ ଦେଶ ମାଟିରେ ଅବହେଳିତ ଓ ଅନାଲୋଚିତ ହୋଇ ରହିଗଲେ–ଏହାଠାରୁ ବଳି ଦୁଃଖ ଆଉ କିଛି ନାହିଁ । କିନ୍ତୁ ତାଙ୍କ ପ୍ରତିଭା ଅଦ୍ୱିତୀୟ ଓ ଅନତିକ୍ରମଣୀୟ ହୋଇ ରହିବ । କୌଣସି ପ୍ରତିଷ୍ଠା ଓ ପୁରସ୍କାରକୁ ଅପେକ୍ଷା ନରଖି ସାଧନାରେ ବିଶ୍ୱାସ ରଖିଥିବା ଏହି ପ୍ରବାଦ ପୁରୁଷଙ୍କ ବିକଳ୍ପ ଆଉ କେହି ନାହାନ୍ତି ବୋଲି ମୋର ବିଶ୍ୱାସ । ମୋ ମତରେ ସେ ପ୍ରକୃତରେ ସର୍ବହରାର ସାଥୀ । ସେ ଏକ ଅଲିଭା ଦୀପାଳୀ......

ମୁଁ ସେହି ଦିବଂଗତ ଆତ୍ମା ପ୍ରତି ଶ୍ରଦ୍ଧାଞ୍ଜଳି ଜଣାଇବା ସଙ୍ଗେ ସଙ୍ଗେ ଶୋକ ସନ୍ତପ୍ତ ପରିବାରବର୍ଗଙ୍କୁ ସମବେଦନା ଜଣାଉଛି ।

ପ୍ରୋ : ତାରତାରିଣୀ ପୁସ୍ତକାଳୟ

ପୁରୁଣା ବସ୍‌ଷ୍ଟାଣ୍ଡ, ବ୍ରହ୍ମପୁର

## ✓ ଉମେଶଚରଣଙ୍କ ଦିଗନ୍ତ ବିସ୍ତାରୀ ପ୍ରତିଭା ପ୍ରସୂନ


୧ । ଘୂମନ୍ତ ନୀଳିମା

୨ । ଅଶ୍ରୁ ଟୀକା

୩ । ରଜନୀ ଗନ୍ଧାର ପ୍ରଶ୍ନ

୪ । ସମ୍ପୂର୍ଣ୍ଣ ଜ୍ୟୋତିଷ ଶିକ୍ଷା

୫ । ରାଶି ଓ ଗ୍ରହ ବିପ୍ର

୬ । ଜ୍ୟୋତିଷ ରତ୍ନ

୭ । ଆମ ନେହେରୁ

୮ । ଆମ କବିଙ୍କ ଚିଲିକା (ପ୍ରବନ୍ଧ)

୯ । ବେଳାଭୂମି ଧାରେ ଧାରେ ବିଜ୍ଞାନ (ପ୍ରବନ୍ଧ)

୧୦ । ଓଡ଼ିଶାର ବନ୍ୟା ନିୟନ୍ତ୍ରଣ ଓ ସାର୍ ବିଶ୍ୱେଶ୍ୱରେୟା (ପ୍ରବନ୍ଧ)

୧୧ । ଅନ୍ଧବିଶ୍ୱାସରେ ନୌ-ବିଜ୍ଞାନ (ପ୍ରବନ୍ଧ)

୧୨ । ବ୍ରହ୍ମଜ୍ଞାନ ସମ୍ବନ୍ଧରେ (ପ୍ରବନ୍ଧ)

୧୩ । ଆଜ୍‌ବେଷ୍ଟସ କର୍କଟ ରୋଗର ଏକ କାରଣ (ପୁରସ୍କୃତ ପ୍ରବନ୍ଧ)

୧୪ । ଓଡ଼ିଶାର ୧୯୮୨ ବନ୍ୟାର କାରଣ ଓ ବନ୍ୟାନିୟନ୍ତ୍ରଣ (ପ୍ରବନ୍ଧ)

୧୫ । ଚିଲ, ଚିଲିକା, ଚିଲ ମିଲିକା (ପ୍ରବନ୍ଧ)


—o—

# ମୋ ଭାଇନା—ଉମା ଭାଇନା

ଭାଇନା ଚାଲିଗଲେ । ସୋମବାର ମଧ୍ୟାହ୍ନରେ ତିନି ଘର ଜଣଙ୍କଠାରୁ ଖବରଟି ନ ଶୁଣିବା ପର୍ଯ୍ୟନ୍ତ ବିଶ୍ୱାସ ହେଲା ନାହିଁ ଭାଇନା ଚାଲିଗଲେ । ସବୁଥର ତ ଆସିବା ଆଉ ଯିବା କଥା ଜଣାଉଥାଏ, ଏଥର କେବଳ ଆସିବା କଥା କହିଥିଲେ, ଯିବା କଥା ତ କହିଲେ ନାହିଁ । ତିନିମାସ ଏଠି ରହିବା କଥା ଥିଲା । କିଛି ନ ଜଣାଇ, କିଛି ନ କହି ସବୁଦିନପାଇଁ ଚାଲିଗଲେ । 'ଆମ ନେହେରୁ' ବହିର ଶୁଦ୍ଧିପତ୍ର ଦେଖା ହୋଇ ପାରିଲା ନାହିଁ, ନୂଆ ଉପନ୍ୟାସଟି ପଢ଼ା ହୋଇପାରିଲା ନାହିଁ କି ନୂଆ ବହିଟିର ଉନ୍ମୋଚନ ଉତ୍ସବ ପାଳିତ ହେଲା ନାହିଁ । ଏ କେମିତି ହେଲା । ତା' ଜ୍ୟୋତିଷ ଶାସ୍ତ୍ର କ'ଣ ତାକୁ ଯିବାର ଦିନ ତାରିଖ କହି ନ ଥିଲା । ଯିବା ପୂର୍ବରୁ ଥରେ ଦେଖା ହୋଇପାରିଲା ନାହିଁ । ତାର ସେହି ସ୍ନେହ ବୋଳା ଦରଦୀ ସ୍ୱର 'ବିଜୟ, ତୁ ଆଜି ଏତେ ବୁଲେଇଦାରେ—ନା, ଆଜି ଯା'ନା—ଆମର ସେତିକି ହେଲା ସେତିକି' ଶୁଣିବାକୁ ମିଳିଲାନି । ଏଥିପାଇଁ ଶାନ୍ତିନିକେତନ ଯିବା କଥା ତାକୁ କହି ନ ଥିଲି । ମତେ ଯିବା ପାଇଁ ବାରଣ କରୁଥିଲା, କିନ୍ତୁ ସିଏ ଚାଲିଗଲା । ନିଶ୍ଚୟ ମୋ ଉପରେ ରାଗିକରି ନୁହେଁ । ମୋ ଉପରେ ରାଗିବା ତା' ପକ୍ଷରେ ସମ୍ଭବ ନୁହେଁ । ସେ ଯେତେ-ବେଳେ ଦୁର୍ଦ୍ଦାନ୍ତ ଟୁମ୍ପ ଭାବେ ପରିଚିତ ଥିଲି, ସେତେବେଳେ ମୁଁ ଜାମୁକୋଳି ଗଛକୁ ଟେକା ଫୋପାଡ଼ି ତାର ମୁଣ୍ଡ ଫଟେଇ ଦେଇଥିଲି । କାହିଁ, ସେତେ-ବେଳେ ତ ସେ ରାଗିନଥିଲା । ତେବେ···ତେବେ ଏ ରାଗ କାହା ଉପରେ···???

ଭାଇନା ମୋର ମଉସାଙ୍କ ପୁଅ । ଚକଟି ନିକଟସ୍ଥ ଲୋକନାଥପୁର ଶାସନର ଦେବୋପମ ସ୍ୱନାମଧନ୍ୟ ଶିକ୍ଷକ ବ୍ରଜସୁନ୍ଦର ପାଢ଼ୀ—ବ୍ରଜପାଢ଼ୀ—ବ୍ରଜପାଢ଼ୀ ମାଷ୍ଟ୍ରଙ୍କ ଚାରି ପୁଅ ମଧ୍ୟରୁ (ଅନ୍ୟ ତିନିଜଣ ଅବସରପ୍ରାପ୍ତ ସିଭିଲ୍ ଇଞ୍ଜିନିୟର ଶ୍ରୀଯୁକ୍ତ ଲକ୍ଷ୍ମୀନୃସିଂହ ପାଢ଼ୀ, ଅବସରପ୍ରାପ୍ତ ଇଲେକ୍ଟ୍ରିକାଲ୍ ଚିଫ୍ ଇଂଜିନିୟର ଶ୍ରୀଯୁକ୍ତ ରମେଶ ଚରଣ ପାଢ଼ୀ ଏବଂ ସ୍ୱନାମଧନ୍ୟ ଚକ୍ଷୁରୋଗ ବିଶେଷଜ୍ଞ ଡାକ୍ତର କୃଷ୍ଣଚରଣ ପାଢ଼ୀ)

ଉମେଶ ଚରଣ ତ୍ରିପାଠୀଙ୍କ ପୁଅ । ସେ ମୋଠାରୁ ମାତ୍ର ଦେଢ଼ ବର୍ଷରେ ବଡ଼ । ତାର ଜନ୍ମ ତାରିଖ ୧୫-୭-୧୯୩୭ । ଏଣୁ ଆମେ ଥିଲୁ ଏକାସଙ୍ଗେ ଭାଇ, ବନ୍ଧୁ, ସହଚର ଓ ସଙ୍ଗାଥି । ବଡ଼ଭାଇର ବାତ୍ସଲ୍ୟ, ବନ୍ଧୁର ଶୁଭଚିନ୍ତନ, ସହଚରର ସାହଚର୍ଯ୍ୟ ଏବଂ ସଙ୍ଗାଥିର ଶାସ୍ତ୍ରଚର୍ଚ୍ଚା ନିମିତ୍ତ ପ୍ରେରଣା ସବୁବେଳେ ତାଠାରୁ ମୁଁ ପାଇ ଆସିଛି । ସିଏ ମୋତେ ସିଗାରେଟ୍ ଟାଣିବା ଶିଖାଇଛି, ପାହାଡ଼ରେ ନିଆଁ ଲଗାଇବା ଶିଖାଇଛି, ଅଙ୍କ ପଢ଼ାଇଛି, ଜ୍ୟୋତିଷ ଶିକ୍ଷା ଦେଇଛି, ଘର ତିଆରିରେ ସୂକ୍ଷ୍ମ କୌଶଳ ବତାଇଛି, ଦୁଃଖରେ ଧୈର୍ଯ୍ୟ ଦେଇଛି, ସୁଖରେ ସମଭାଗୀ ହୋଇଛି । ମୋତେ ନ ପଢ଼ାଇ ସେ ତାର କୌଣସି ବହି ପ୍ରେସ୍‌କୁ ଦେଇନାହିଁ; ଏ ଅବସରରେ ଘଣ୍ଟା ଘଣ୍ଟା ଧରି ଯୁକ୍ତି କରିଛୁ, ବହି ଘାଣ୍ଟିଛୁ, ମୌଳିକ ଉତ୍ସକୁ ଯିବାପାଇଁ ଚେଷ୍ଟା କରିଛୁ । ଜିଜ୍ଞାସା ତାର ଅମାପ । ରାତି ଅଧରେ ଗୋଟିଏ ଗୋଟିଏ ଶବ୍ଦର ଅର୍ଥ ଅର୍ଥାନ୍ତର ଜାଣିବା ପାଇଁ ଫୋନ୍ କରିବ । ଓଡ଼ିଆ, ସଂସ୍କୃତ ଅଭିଧାନ ଘାଣ୍ଟି ତାର ସମସ୍ୟାର ସମାଧାନ ନ କରିବା ପର୍ଯ୍ୟନ୍ତ ମୋର ନିସ୍ତାର ନାହିଁ । ଏଥିରେ ଅବଶ୍ୟ ଉଭୟଙ୍କର ଲାଭ ହୋଇଥିଲା ।

ଅନ୍ୟାୟ ଓ ଅବିଚାରର ପ୍ରତିରୋଧ କରିବା ଥିଲା ତାର ଜନ୍ମଗତ ପ୍ରକୃତି । ତିକିଟି ହାଇସ୍କୁଲରେ ପଢ଼ିବାବେଳେ ଏଥିପାଇଁ ସେ ବହିଷ୍କୃତ ହୋଇଥିଲା । ମୋର ନନା ସ୍ୱର୍ଗତ ଯତିରାଜ ଆଚାର୍ଯ୍ୟ ଓ ନୂଆଗଡ଼ା ହାଇସ୍କୁଲର ତତ୍କାଳୀନ ପ୍ରଧାନ ଶିକ୍ଷକ ସ୍ୱର୍ଗତ ହରିହର ପଣ୍ଡା ତାକୁ ଆଣି ପାଖରେ ରଖିଥିଲେ । ଉଭୟଙ୍କ ତତ୍ତ୍ୱାବଧାନରେ ରହି ସେ ମେଟ୍ରିକ୍ ପାଶ୍ କରିଥିଲା । ଖଲ୍ଲିକୋଟ କଲେଜରେ କିଛିଦିନ ଅଧ୍ୟୟନ କଲାପରେ ସିଭିଲ୍ ଇଞ୍ଜିନିୟର ଡ଼ିପ୍ଲୋମା କରିବା ପାଇଁ ସେ ଗଲା କଟକ ଇଞ୍ଜିନିୟରିଙ୍ଗ୍ ସ୍କୁଲକୁ । ଫଳରେ ଜୀବନର ଶେଷ ପର୍ଯ୍ୟନ୍ତ ସ୍ନାତକୋତ୍ତର ଉପାଧି ଓ ପି.ଏଚ୍.ଡ଼ି ଉପାଧିର ସ୍ୱପ୍ନ ତାଠାରେ ସାକାର ହୋଇ ପାରିନଥିଲା । ଅଙ୍କରେ ସେ ଥିଲା ଧୂରୀଣ । ତାଠାରୁ ଉଚ୍ଚ ଶ୍ରେଣୀରେ ପଢ଼ୁଥିବା ପିଲାଙ୍କୁ ସେ ଅଙ୍କ ପଢ଼ାଉଥିଲା । ସ୍ୱାସ୍ଥ୍ୟହାନି ଯୋଗୁଁ କଟକ ସ୍କୁଲରୁ ଆସି ଗୋଟିଏ ବର୍ଷ ଘରେ ରହିଥାଏ । ସେତେବେଳେ ସାମନ୍ତଆପଲ୍ଲୀ ସ୍ଥିତ ମହନ୍ତ ପରାଙ୍କୁଶ ବିଦ୍ୟାପୀଠରେ ଅବୈତନିକ ଶିକ୍ଷକ ଭାବେ ପିଲାଙ୍କୁ ପଢ଼ାଇବା ଦାୟିତ୍ୱ ନିଏ । ତାର ଅଙ୍କ ପଢାଇବା ପ୍ରଣାଳୀକୁ ଏବେ ବି

ସେ ସମୟର ସ୍ମୃତିମାନେ ସ୍ମରଣ କରିଥାନ୍ତି । ଅଧ୍ୟାପକଟିଏ ହେବାର ସ୍ୱପ୍ନ ତାର ଚକ୍ଷୁମାଭିତରେ ହିଁ ରହିଗଲା । ଶେଷ ନିଶ୍ୱାସ ନେବା ପର୍ଯ୍ୟନ୍ତ ତାର ସ୍ମୃତିରୁ କଟିଲା ନାହିଁ ।

ମଣିଷ ଅବସ୍ଥାର ଦାସ । କିନ୍ତୁ ଦାସତ୍ୱ ମୋଚନ ଯେ ଅସମ୍ଭବ ନୁହେଁ, ତାର ଏକ ଉଦାହରଣ ଜମା ଭାଇନା । ପ୍ରତିଭା ତାର ବହୁମୁଖୀ । ଉପେନ୍ଦ୍ରୋମାଧ୍ୟମ ସିଭିଲ ଓଭରସିୟରର ଖାକି ହାଫ୍ ପେଣ୍ଟ ଓ କମ୍ପାସ ପେନ୍‌ସିଲ୍ ତାର ପ୍ରତିଭାକୁ ଧରି ରଖିପାରିନଥିଲା । ଅବଶ୍ୟ ପ୍ଲାନ୍, ଏଷ୍ଟିମେଟ୍, ଡିଜାଇନ୍ କନ୍‌ଷ୍ଟ୍ରକସନ୍, କେନାଲ ପ୍ରଭୃତି କ୍ଷେତ୍ରରେ ସେ କମ୍ପାସ୍ ଓ ପେନ୍‌ସିଲ୍‌ର କୁହୁକ ଯେ ନ ଦେଖାଇଛି ତା'ନୁହେଁ, କିନ୍ତୁ ଅତି ନିସ୍ପୃହ ଭାବରେ । କର୍ମକ୍ଷେତ୍ରରେ ଯେଉଁ ପଦସ୍ଥ ଅଧିକାରୀମାନେ ତାର ପ୍ରତିଭାକୁ ଚିହ୍ନିଥିଲେ, ସେମାନେ ତାକୁ ଆଦର କରିଛନ୍ତି । ଅନ୍ୟମାନେ ଈର୍ଷା କରିଛନ୍ତି, ନିର୍ଯାତନା ଦେଇଛନ୍ତି । ବାରମ୍ବାର ସେ ଚାକିରୀରୁ ସସ୍‌ପେଣ୍ଡ ହୋଇଛି, କିନ୍ତୁ ଶେଷରେ ତାର ପ୍ରାପ୍ୟ ସେ ପାଇଛି ସଦର୍ପରେ । ଚାକିରି ତାକୁ ଦେଇଛି ମାନସିକ ଯନ୍ତ୍ରଣା, ଆର୍ଥିକ ଅନାଟନ ଏବଂ ତା' ସହିତ ମୁକାବିଲା କରିବାର ଶକ୍ତି, ଆତ୍ମରକ୍ଷାର ଅମୋଘ ଅସ୍ତ୍ର ଦୂରଦୃଷ୍ଟି ଓ ପ୍ରତ୍ୟୁତ୍ପନ୍ନମତିତା । ପ୍ରତିକୂଳ ପରିବେଶ ଓ ପରିସ୍ଥିତିରେ ପ୍ରତିଭାର ଭାଗ୍ୟଲିପି ଯାହା ହେବା କଥା, ତାହା ହିଁ ହୋଇଛି; ସବୁଠି ଅର୍ଦ୍ଧ ସାଫଲ୍ୟ । ପୂର୍ଣ୍ଣତାର ପ୍ରୟାସ ଆରମ୍ଭ ହେବାବେଳେ ନିର୍ଯାତିତ ପ୍ରତିଭାଟିର ଅବସାନ ଘଟିଛି ।

କୈଶୋରରୁ ସଂଗୀତ, ନାଟକ ଓ କବିତା ପ୍ରତି ତାର ମୋହ । ଆଦ୍ୟ ଯୌବନର ପ୍ରଣୟ ମୁଗ୍ଧ ପ୍ରାଣରୁ ଝରି ଆସିଛି ବହୁ କବିତା । ପ୍ରତିଟି କବିତା ସଦ୍ୟ ପ୍ରସ୍ଫୁଟିତ ନଳିନୀ ପରି ତଳ ତଳ, କାନ୍ତ କୋମଳ, ସେଗୁଡ଼ିକୁ ଗାଇ ଶୁଣାଇବାରେ ତାର ଅପୂର୍ବ ଆନନ୍ଦ । ଅନ୍ୟର ନାଟକ ପାଇଁ ସେ ଗୀତ ଲେଖିଛି, ନିଜେ ନାଟକ ଲେଖିଛି, ଅଭିନୟ କରିଛି ଏବଂ ତଦ୍ଭିନ୍ନ ନାଟକର ନିର୍ଦ୍ଦେଶନା ଦେଇ ବାହାବା ନେଇଛି । ତାର ଅଭିନୟରେ ମୁଗ୍ଧ ହୋଇ ବାଲିଅନ୍ତାରେ ସ୍ୱର୍ଗତ ରାମକୃଷ୍ଣ ନନ୍ଦ ତାକୁ କୁଣ୍ଢାଇ ପକାଇଥିଲେ । ପରବର୍ତ୍ତୀ ସମୟରେ ଟେଲିଭିଜନ 'ସୀତା ଲବକୁଶ'ର ସଂଳାପ ଓ ଗୀତ ରଚୟିତା ଭାବେ ସେ ସୁନାମ ଅର୍ଜନ କରିଛି । ଅଣ ଓଡ଼ିଆ ନିର୍ଦ୍ଦେଶକ ସଂଳାପ ଓ ଗୀତର ଭାଷାକୁ ବିକୃତ କରିବା ଯୋଗୁଁ ତୀବ୍ର ପ୍ରତିବାଦ କରି

ତଳକଳିସ ଜଗତରୁ ଦୂରେଇ ଯାଇଛି, ତଥାପି ଜଲଲ ଆଦନ, ସର୍ଯ୍ୟ ମହାପାତ୍ର, ପ୍ରଶାନ୍ତ କୁମାର ଗୈଁ ଧୁରୀ, ସୂର୍ଯ୍ୟନାରାୟଣ ଦାସ, ଭାସ୍କର ପାଢ଼ ପ୍ରଭୃତିଙ୍କ ଗଢ଼ଣରେ ବ୍ରହ୍ମପୁର ଓ ଗୋପାଳପୁରର ସଂଗୀତ ଆସରଗୁଡ଼ିକ କଦାପି ବିସ୍ମୃତ ହେବାର ନୁହେ ।

କଥାକାର ଭାବରେ ଓଡ଼ିଆ ସାହିତ୍ୟକୁ ସେ ଦେଇଛି 'ଅଶ୍ରୂଟୀକା' (୧୯୬୯), 'ଘ୍ରମନ୍ତ ମାଳମା' (୧୯୭୧) ଉପନ୍ୟାସ ଓ ଭଜମାଗଦ୍ଧାର ପ୍ରଶ୍ନ (୧୯୭୮) ଗଳ୍ପ ସଂଗ୍ରହ । 'ପଶ୍ଚିମା ବଧୂ' ତଥାପି ଅପ୍ରକାଶିତ । 'ସୁକାନ୍ତ'ର ଅସଂପୂର୍ଣ୍ଣ ପୃଷ୍ଠା ବ୍ରହ୍ମପୁର ବାସଭବନର ପଢ଼ା ଟେବୁଲ୍ ଉପରେ ତାକୁ ପ୍ରତୀକ୍ଷା କରୁଛି । ଅସଂପୂର୍ଣ୍ଣ ନାରୀ ଜୀବନର ବାସ୍ତବ ଚିତ୍ର ଦେବାପାଇଁ ସେ ପ୍ରୟାସୀ । ଅଗଣିତ ସଂଧ୍ୟା, ସଞ୍ଜୁ, ମାଳମାଙ୍କ ମନ ଗହନର ଗୋପନ କଥା ଓ ବ୍ୟଥାକୁ ସେ ଉଖାରିଛି । ସଫଳତାର ସ୍ୱାକ୍ଷର ପାଠକ ପାଠିକାମାନଙ୍କଠାରୁ ପାଇଥିବା ଅସଂଖ୍ୟ ଚିଠି । ଉପନ୍ୟାସଗୁଡ଼ିକ ଓଡ଼ିଆ କଥା ସାହିତ୍ୟର ମୋଡ଼ ପରିବର୍ତ୍ତନ କରିବା ପାଇଁ ହୁଏତ ସମର୍ଥ ହୋଇ ନାହାନ୍ତି, ତଥାପି ସୁଖପାଠ୍ୟ ରଚନା ଭାବରେ କିଛି ପାଠକକୁ ଆମୋଦିତ କରିଛନ୍ତି ନିଶ୍ଚୟ । ଅନୁଭୂତିର ନିବିଡ଼ତା ଅବଚେତନରୁ ଲେଖନୀକୁ ନିୟନ୍ତ୍ରଣ କରି ଆସିଲାବେଳେ ଔପନ୍ୟାସିକ ଆଉ ନାହାନ୍ତି ।

ଜ୍ୟୋତିଷ ଚର୍ଚ୍ଚା ଭାଇନାର ଏକ ସଉକ୍ । ଗଣିତ ଓ ଫଳିତ ଉଭୟକୁ ସେ ଆୟତ୍ତ କରିପାରିଥିଲା । ତାର ଗଣନା ଥିଲା ଏକାନ୍ତ ଅଭ୍ରାନ୍ତ । ତାର ମଉସା ପଣ୍ଡିତ ଯତିରାଜ ଆଚାର୍ଯ୍ୟଙ୍କଠାରୁ ସେ ଲଗ୍ନ ନିର୍ଣ୍ଣୟ ପ୍ରଭୃତି କେତେକ ବିଶେଷ ସୂତ୍ର ଶିକ୍ଷା କରିଥିଲା । ଜ୍ୟୋତିଷର ଅନ୍ୟତମ ବିଶିଷ୍ଟ ନୀରବ ସାଧକ ଶ୍ରୀଯୁକ୍ତ ଆଦିକନ୍ଦ ମହାନ୍ତି ଥିଲେ ଏ ସମ୍ପର୍କରେ ଜଣେ ଶୁଭେଚ୍ଛୁ ଓ ପରାମର୍ଶଦାତା । ତାର ଏହି ଜ୍ୟୋତିଷ ଚର୍ଚ୍ଚା ହିଁ ମୋତେ ବିଶ୍ୱବିଦ୍ୟାଳୟକୁ ନେଇଥିଲା । ଜ୍ୟୋତିଷ ସଂପର୍କରେ ଓଡ଼ିଆ ବହିର ଅଭାବ ନାହିଁ । କିନ୍ତୁ ଭାଇନାର ତିନୋଟି ବହି ସାଧାରଣ ଜ୍ୟୋତିଷ ଜ୍ଞାନ ଆହରଣ ଏବଂ ଦୈନନ୍ଦିନ ଜୀବନ ପାଇଁ କେବଳ ଉପାଦେୟ ନୁହେ ଆବଶ୍ୟକ ମଧ୍ୟ । ଏଥିପାଇଁ ଏଗୁଡ଼ିକର ଚାହିଦା ଏତେବେଶୀ । ସିଏ ଅନ୍ୟର ଭାଗ୍ୟ ଗଣନା କରି ଦୃଷ୍ଟି ଖଣ୍ଡନରେ ଉପାୟ ବତାଇ ଦେଇପାରୁ ଥିଲା,

ସେ ନିଜ ସମ୍ପର୍କରେ କିଛି ନ କରିବା କି ଆଶ୍ଚର୍ଯ୍ୟ । ସିଏ ସବୁବେଳେ ନିଜ ସମ୍ପର୍କରେ ଏପରି ଉଦାସୀନ ଓ ବେପରୁଆ ।

ବିଶ୍ୱବିଦ୍ୟାଳୟର ସ୍ନାତକୋତ୍ତର କିମ୍ବା ଗବେଷଣାତ୍ମକ ଉପାଧି ଲାଭ ନକରି ଗବେଷଣାତ୍ମକ ନିବନ୍ଧର ତତ୍ତ୍ୱାବଧାରକ ହେବା କମ୍ ଗବେଷକଙ୍କ ଭାଗ୍ୟରେ ସମ୍ଭବ ହୋଇଥାଏ । ଭାଇନା ଥିଲେ ସେହି ସୁଭଗ ଗବେଷକମାନଙ୍କ ମଧ୍ୟରୁ ଅନ୍ୟତମ । ଜଣେ ଡିପ୍ଲୋମାଧାରୀ ଇଞ୍ଜିନିୟର ଏକ ସ୍ୱୟଂଶାସିତ ଜାତୀୟ ଅନୁଷ୍ଠାନ ଦ୍ୱାରା ଗବେଷଣା—ତତ୍ତ୍ୱାବଧାରକ ରୂପେ ସ୍ୱୀକୃତି ପ୍ରାପ୍ତ ହେବା ସାଧାରଣ କଥା ନୁହେଁ । ନୂଆ ଦିଲ୍ଲୀସ୍ଥିତ Indian Institute of Ecology and Environment ତାଙ୍କ ତତ୍ତ୍ୱାବଧାରକତ୍ୱକୁ ସ୍ୱୀକୃତି ଦେଇଥିଲେ ଏବଂ ତାଙ୍କ ତତ୍ତ୍ୱାବଧାନରେ ଇଂଜିନିୟର ବିଶ୍ୱନାଥ ସାହୁଙ୍କ ଦ୍ୱାରା ପ୍ରସ୍ତୁତ 'Chilika an Environment Monument' ଏକ ଉଚ୍ଚମାନର ନିବନ୍ଧ ରୂପେ ବିବେଚିତ ହୋଇଥିଲା ।

ଅନୁରୂପ ଭାବେ ତାଙ୍କର କୌଣସି ଆଇନ ଉପାଧି ନ ଥିଲା । ତଥାପି ଶ୍ରମ-ଆଇନରେ ତାଙ୍କ ଦକ୍ଷତା ତାଙ୍କୁ ବିଭିନ୍ନ ଅଦାଲତରେ ଓକିଲାତି କରିବା ପାଇଁ ସୁଯୋଗ ଦେଇଥିଲା । ଅବଶ୍ୟ ଯେ କୌଣସି ଶ୍ରମିକନେତା ଏହା କରିପାରେ । କିନ୍ତୁ ଶ୍ରମ-ଆଇନରେ ତା'ର ବ୍ୟୁତ୍ପତ୍ତି, ଭାରତର ବିଭିନ୍ନ ନିମ୍ନ ଓ ଉଚ୍ଚନ୍ୟାୟାଳୟର ସିଦ୍ଧାନ୍ତ ସମ୍ପର୍କରେ ତାଙ୍କ ବାରିମାନିକ ଜ୍ଞାନ ଏବଂ ଯୁକ୍ତି ଉପସ୍ଥାପନାରେ, ତାଙ୍କ ଅପୂର୍ବ ପ୍ରତ୍ୟୁତ୍ପନ୍ନମତିତା ଅଭିଜ୍ଞ ଆଇନଜ୍ଞ ଓ ନ୍ୟାୟାଧୀଶମାନଙ୍କୁ ବିସ୍ମିତ କରୁଥିଲା । ଶ୍ରମିକ ବା ତଳିଆ କର୍ମଚାରୀଙ୍କ ପ୍ରତି ହେଉଥିବା ଅନ୍ୟାୟ ବିରୋଧରେ ଲଢ଼ିବା ତାଙ୍କ ଏକ ବିଳାସ । ଏଥିପାଇଁ ନିଜ ହାତରୁ ଅର୍ଥବ୍ୟୟ କରିବା ପାଇଁ ସେ କୁଣ୍ଠିତ ନଥିଲେ । ଏବେ ବି ତାଙ୍କୁ ଖୋଜିବା ପାଇଁ ଲୋକ ଆସୁଛନ୍ତି । କିନ୍ତୁ ତାଙ୍କ ଅନାହାରୀ ଆଇନ ପରାମର୍ଶଦାତା ଏବେ ନିଜ କେସ୍ ଲଢ଼ିବା ପାଇଁ ପାରତ୍ରିକ ନ୍ୟାୟାଳୟରେ ଉପସ୍ଥିତ ।

ଭାଇନା ମୋର ଶ୍ରେଷ୍ଠ ଗବେଷକଟିଏ । ଦୃଷ୍ଟି ତାଙ୍କ ବୁଦ୍ଧିଦୀପ୍ତ, ଅଧ୍ୟୟନ ଗଭୀର ଓ ବିସ୍ତୃତ, ବିଶ୍ଳେଷଣ ବୈଜ୍ଞାନିକ, ଯୁକ୍ତି ତଥ୍ୟନିଷ୍ଠ ଏବଂ

ସିଦ୍ଧାନ୍ତ ଉପସ୍ଥାପନା ନିରର୍ଥକ । ତାର ବଦଳି ହୁଏ ଗୋପାଳପୁର ବନ୍ଦର ସଂସ୍ଥାକୁ । ନୂଆ କାମ ଆରମ୍ଭ ହେଉଥାଏ । ହାତରେ ବିଶେଷ କାମ ନାହିଁ । ଆରମ୍ଭ ହେଲା ଗବେଷଣା ବନ୍ଦର, ଉପକୂଳ, ବାୟୁପ୍ରବାହ, ସାମୁଦ୍ରିକ ବିଜ୍ଞାନକୁ ନେଇ । ସାର୍ଦ୍ଧ ଦୁଇଶହ ବର୍ଷର ପୁରୁଣା ରେକର୍ଡ ଓ ରିପୋର୍ଟ ସବୁ ଖୋଜି ସେ ଅନୁଧ୍ୟାନ କରିଛନ୍ତି ସମୁଦ୍ର ଓ ମୌସୁମୀର ବିଚିତ୍ର ଆଚରଣ; ବନ୍ୟା ଓ ବାତ୍ୟାର ଇତିହାସ । ବିଶାଖାପାଟଣାଠାରୁ ପାରାଦ୍ୱୀପ ପର୍ଯ୍ୟନ୍ତ ଉପକୂଳକୁ ନେଇ ତାର ଗବେଷଣା । ସେ ବହୁବାର କହିଛନ୍ତି, ଆମେ ଭାଗ୍ୟବାନରେ ବିଜୟ । ଆମେ ଯେଉଁଠି ରହୁଛେ ସେଠି ବାତ୍ୟାର ପ୍ରକୋପ ବହୁତ କମ୍, ବନ୍ୟା ପ୍ରାୟ ନାହିଁ । ପ୍ରକୃତର ଏହା ଆମ ପାଇଁ ଏକ ନିରାପଦ ଆଶ୍ରୟସ୍ଥଳ । ଏଠି ଯେଉଁ ବନ୍ୟାହୁଏ ତାହା ପ୍ରକୃତିକୃତ ନୁହଁ ମନୁଷ୍ୟକୃତ; ଆମ ଇଂଜିନିୟରମାନଙ୍କ ଅଜ୍ଞତା ଓ ଅଦୂରଦର୍ଶିତାର ଫଳ ।' ଏ ସମ୍ପର୍କରେ ସେ ବହୁ ରିପୋର୍ଟ ସରକାରଙ୍କୁ ଦେଇଛନ୍ତି, ବହୁ ଗବେଷଣାମୂଳକ ପ୍ରବନ୍ଧ ପ୍ରକାଶ କରିଛନ୍ତି ଏବଂ ସେଥିପାଇଁ ସ୍ୱର୍ଣ୍ଣପଦକ ପାଇଛନ୍ତି । ମନ୍ତ୍ରୀ ଓ ମୁଖ୍ୟମନ୍ତ୍ରୀ (ଡ. ମହତାବ) ତାର ମତାମତକୁ ଗୁରୁତ୍ୱ ଦେଇଛନ୍ତି, ଜର୍ମାନ୍ ବିଶେଷଜ୍ଞମାନେ ତାର ସିଦ୍ଧାନ୍ତକୁ ପ୍ରଶଂସା କରିଛନ୍ତି । କିନ୍ତୁ ସେ ତ ଜଣେ ସାଧାରଣ ସିଭିଲ୍ ଓଭରସିୟର, ପଦସ୍ଥ ବଡ ବଡ ଇଂଜିନିୟରଙ୍କ ଅହମିକା ଆଗରେ ସେ କେତେ ଶ୍ରେଷ୍ଠ । ଗବେଷଣାରତ ସାଧକର ବେଳ କାହିଁ ବାରଂବାର ରାଜନୈତିକ ନେତାମାନଙ୍କ ଦ୍ୱାରସ୍ଥ ହେବା ପାଇଁ ? ଇଂରେଜୀ ଓ ଓଡ଼ିଆ ଭାଷାରେ ଲିଖିତ ନିମ୍ନଲିଖିତ କେତୋଟି ପ୍ରବନ୍ଧକୁ ଅନୁଧ୍ୟାନ କଲେ ତାର ଗବେଷଣାର ସ୍ୱରୂପ ଓ ବିଶେଷତ୍ୱ ଉପଲବ୍ଧି କରି ହେବ ।

1. Tackling littoral drift in a Port on East coast of India (1974) ସ୍ୱର୍ଣ୍ଣପଦକ ପ୍ରାପ୍ତ
2. Tackling flood Devastation in Orissa (1975) ସ୍ୱର୍ଣ୍ଣପଦକ ପ୍ରାପ୍ତ
3. Development of coastal Town Gopalpur. (1975)
4. Scientific aforetstation along East coast. (1978) ସ୍ୱର୍ଣ୍ଣପଦକ ପ୍ରାପ୍ତ
5. Lime shall to preferred to Cement in Orissa (1980)
6. ଓଡ଼ିଶାର ବନ୍ୟା ନିୟନ୍ତ୍ରଣ ଓ ସାର୍ ବିଶ୍ୱେଶ୍ୱରେୟା (୧୯୮୧)

7. Tide, wave and other phenomena of Bay of Bengal (1981)
8. ଓଡ଼ିଶାର ୧୯୮୨ ବନ୍ୟାର କାରଣ ଓ ବନ୍ୟା ନିୟନ୍ତ୍ରଣ (୧୯୮୩)
9. ଆସ୍‌ବେଷ୍ଟସ କର୍କଟ ରୋଗର ଏକ କାରଣ (୧୯୮୭) ପୁରସ୍କୃତ
10. Heat and Waterproof Treatment to R. C. C. Roof (1987)
11. ଇନ୍ଦ୍ରାବତୀ ଦୁର୍ଘଟଣା ମଣିଷକୃତ (୧୯୯୨)
12. ଆମ ସବଙ୍କ ଚିଲିକା (୧୯୯୧)
13. ଚିଲି, ଚିଲିକା, ଚିଲିମିଲିକା (୧୯୯୩)
14. ବ୍ରହ୍ମାଣ୍ଡର ସନ୍ଧାନରେ (୧୯୯୩)
15. ବେଳାଭୂମି ଧାରେ ଧାରେ ବିଜ୍ଞାନ (୧୯୯୪)
16. ଅନ୍ଧବିଶ୍ୱାସରେ ନୌ-ବିଜ୍ଞାନ (୧୯୯୪) ଇତ୍ୟାଦି ।

'ସୀତା ଲବକୁଶ'ର ଚିତ୍ର ନାଟ୍ୟ ପ୍ରସ୍ତୁତି ଅବସରରେ ସେ ବିଭିନ୍ନ ରାମାୟଣକୁ ତନ୍ନ ତନ୍ନ କରି ଅଧ୍ୟୟନ କରିଥିଲେ । ସାମୁଦ୍ରିକ ବିଜ୍ଞାନ ଓ ପୂର୍ବ ଉପକୂଳର ବାୟୁପ୍ରବାହ ସମ୍ପର୍କରେ ଗବେଷଣାବେଳେ ରାମାୟଣ ତାଙ୍କ ମାନସପଟରେ ଏକ ଅଭିନବ ଚେତନା ଜାଗ୍ରତ କରିଥିବା ଅତ୍ୟନ୍ତ କୌତୁହଳର ବିଷୟ । ଗତ ଦଶବର୍ଷ ଧରି ହଜାର ହଜାର ଟଙ୍କାର ବହି ପତ୍ର କିଣି ସେ ଏ ବିଷୟରେ ଏକ ଅଭିନବ ତଥ୍ୟ ପରିବେଷଣ କରିବାର ପ୍ରୟାସ କରୁଥିଲେ । ତା' ପାଇଁ ବାଲ୍ମୀକି ଥିଲେ ତାଙ୍କ ସମୟର ଜଣେ ପ୍ରବୀଣ ବାୟୁ ବିଜ୍ଞାନୀ ଓ ପରିବେଶବିତ୍‌, ରାବଣ ଥିଲେ ଭୟଙ୍କର ଶବ୍ଦ କରି ପ୍ରଚଣ୍ଡ ବେଗରେ ପ୍ରବାହିତ ହେଉଥିବା ମୌସୁମୀବାୟୁ ଏବଂ ରାମଙ୍କ ଦ୍ୱାରା ନିହତ ହୋଇଥିବା ବିଭିନ୍ନ ରାକ୍ଷସ ଓ ରାକ୍ଷସୀ ଥିଲେ ଏକ ଏକ ନିର୍ଦ୍ଦିଷ୍ଟ ଅଞ୍ଚଳର ବାୟୁପ୍ରବାହ । ରାମଚନ୍ଦ୍ରଙ୍କ ଦ୍ୱାରା ଯେଉଁ ଯେଉଁ ରାକ୍ଷସ ଯେଉଁ ସବୁ ସ୍ଥାନରେ ନିହତ ହୋଇଥିବା କଥା ବାଲ୍ମୀକି ଉଲ୍ଲେଖ କରିଛନ୍ତି, ଭାଇନା ସେହି ସେହି ସ୍ଥାନକୁ ଯାଇ ସେ ସବୁ ସ୍ଥାନର ବାୟୁପ୍ରବାହ, ବାତ୍ୟା ଓ ବର୍ଷାର ପ୍ରକୃତିକୁ ଅନୁଧ୍ୟାନ କରିଛନ୍ତି । ରାମଚନ୍ଦ୍ର ବା ଲକ୍ଷ୍ମଣ ଯେଉଁ ସବୁ ଅସ୍ତ୍ରଦ୍ୱାରା ସେମାନଙ୍କୁ ହତ୍ୟା କରିଥିଲେ ସେ ସବୁର ଲକ୍ଷଣ ଓ ସ୍ୱରୂପ ସମ୍ପର୍କରେ ବିଶେଷ ବିବରଣୀ ସଂଗ୍ରହ କରିଛନ୍ତି । କିନ୍ତୁ ଅବଶୋଷର କଥା ତା'ର ମୌଳିକ ଗବେଷଣାର ଶେଷ ସିଦ୍ଧାନ୍ତ ଲିପିବଦ୍ଧ କରିବା ପୂର୍ବରୁ ଅକାଳରେ ଚାଲିଗଲେ । ବ୍ରହ୍ମପୁରରୁ

ଗଲାବେଳେ ରାମାୟଣ ସମ୍ପର୍କୀୟ ଯେଉଁ ପେଡ଼ିଏ ବହି ସେ ସାଙ୍ଗରେ ଧରି ଯାଇଥିଲା, ତା'ର ସଦ୍ ବିନିଯୋଗ ହୋଇ ପାରିଲାନାହିଁ । ହେବାର ସମ୍ଭାବନା ହିଁ ନାହିଁ । ନିରବଧି କାଳ ଏବଂ ବିପୁଳା ପୃଥିବୀରେ ତାର ସମଧର୍ମୀ ଗବେଷକ କେବେ ଜନ୍ମିବେ କିଏ ଜାଣେ ?

ନେତୃତ୍ୱ ନେବାର ସମସ୍ତ କଳା ନେଇ ଜନ୍ମ ହୋଇଥିଲା ଘଇନା । ସାଙ୍ଗଠନିକ କ୍ଷମତା ତାର ସ୍ମରଣୀୟ । ନାଟ୍ୟ ଗୋଷ୍ଠୀଠାରୁ ଶ୍ରମିକ ଓ କର୍ମଚାରୀ ସଂଗଠନ ପର୍ଯ୍ୟନ୍ତ ସବୁଠି ସେ ତାର କୃତିତ୍ୱର ପଦଚିହ୍ନ ଛାଡ଼ିଯାଇଛି । ବିଭିନ୍ନ ସଂଗଠନର ସେ ଥିଲା ସଭାପତି ଓ ନେତା । ତାର ଭାଷଣ ଥିଲା ତଥ୍ୟନିଷ୍ଠ, ଯୁକ୍ତିସିଦ୍ଧ ଏବଂ ପ୍ରଭାବଶାଳୀ । ଓଜସ୍ୱିନୀ ଭାଷଣ ଶୁଣିବା ପାଇଁ ଶ୍ରୋତାମାନେ ବ୍ୟଗ୍ର ଥିଲେ । ମନ୍ତ୍ରୀମାନେ ଡ଼ାକନେଇ ତାର ଯୁକ୍ତି ଶୁଣୁଥିଲେ, ତାର ମତାମତକୁ ଗୁରୁତ୍ୱ ଦେଉଥିଲେ । ତାର ଲେଖଣୀ ଥିଲା ତୃପ୍ତ ଓ ବଳିଷ୍ଠ । ନିଜ ସଂଗଠନ ପାଇଁ ଯେଉଁ ସବୁ ଶ୍ୱେତପତ୍ର ସେ ପ୍ରସ୍ତୁତ କରିଛି, ସେଗୁଡ଼ିକର ଭାଷା, ତଥ୍ୟ, ଯୁକ୍ତି ଓ ଦୃଢ଼ଦର୍ଶନ ଅବଶ୍ୟ ଲକ୍ଷ୍ୟ କରିବାର କଥା । ସେ କୌଣସି ରାଜନୈତିକ ଦଳ ସହ ସଂଶ୍ଳିଷ୍ଟ ନ ଥିଲା ତଥାପି ସବୁ ଦଳର ରାଜନୀତି-ଦର୍ଶନ ସମ୍ପର୍କରେ ତାର ଧାରଣା ଓ ମତାମତ ଥିଲା ଅତ୍ୟନ୍ତ ସୁସ୍ପଷ୍ଟ । ଭାରତ ତଥା ଓଡ଼ିଶାର ରାଜନୀତିକ ଇତିହାସ ବିଷୟରେ ତାର କପରି ଅନୁଶୀଳନ ଥିଲା, ତାହା 'ଆମ ନେତୃତ୍ୱ' ଜୀବନୀଗ୍ରନ୍ଥରୁ କଳନା କରାଯାଇପାରେ । କଟକ ଇଞ୍ଜିନିୟରିଙ୍ଗ ସ୍କୁଲର ଛାତ୍ର ଥିବା ବେଳେ ଏହି ରାଜନୀତି-ଦର୍ଶନକୁ ନେଇ ଚଣ୍ଡୀଳଙ୍କି ଡ଼ାକ୍ତର ମାର୍କଣ୍ଡ କୃଷ୍ଣମୂର୍ତ୍ତି ଓ ତା' ମଧ୍ୟରେ ଯେଉଁ ମତାନ୍ତର ସୃଷ୍ଟି ହୋଇଥିଲା, ସେଥିରେ ଶେଷରେ ୰ ଲିଙ୍ଗରାଜ ପାଣିଗ୍ରାହୀ, ୰ ଦିବାକର ପଟ୍ଟନାୟକ, ୰ ଗୋବିନ୍ଦ ଦ୍ୟାନସାମନ୍ତରାୟ ପ୍ରମୁଖଙ୍କୁ ହସ୍ତକ୍ଷେପ କରିବାକୁ ପଡ଼ିଥିଲା ।

ତା ୩୧-୭-୯୫ରେ ଘଇନା ଅବସର ନେଲା । ରାମାୟଣର କାମ ଶେଷ କରିବା ଥିଲା ତା'ର ପ୍ରଥମ ଲକ୍ଷ୍ୟ । କିନ୍ତୁ ତିନୋଟି ବର୍ଷ କଟିଗଲା କେବଳ ପାରିବାରିକ ଦୁଃସ୍ଥିତି ଭିତରେ । ସବୁ ଦୁଶ୍ଚିନ୍ତାକୁ ଅନ୍ୟମାନଙ୍କ ଉପରେ ଫୋପାଡ଼ି ଦେଇ ତା ୨୮-୯-୯୮ରେ ସେ ଚାଲିଗଲା ନିଶ୍ଚିନ୍ତ ହେବା ପାଇଁ । ଦିବା ଭୋଜନ ପରେ ହାତରେ ପୁଅର ହାତ, ଆଗରେ ପ୍ରିୟତମା ପତ୍ନୀ । (ଯା'କୁ ବାରମ୍ବାର ସେ ମୃତ୍ୟୁମୁଖରୁ ଫେରାଇ ଆଣିପାରି- ଥିଲା ।)ଯାହିରେ ପ୍ରିୟ ମେଘନା ବିଡ଼—ମୃତ୍ୟୁ କି ଆନନ୍ଦଦାୟକ, ଆମୋଦ

ପ୍ରତି ! ମାତ୍ର କେଇଟି ମିନଟ୍—କାହାକୁ ବ୍ୟସ୍ତ କରିବାର ନାହିଁ, କାହାକୁ ବିରକ୍ତ କରିବାର ନାହିଁ । ମୃତ୍ୟୁପରେ ବି କଷ୍ଟ କରିବା ପାଇଁ ସେ ସମସ୍ତଙ୍କୁ ବାରଣ କରିଥିଲେ । ତଥାପି ତ ମଣିଷ ସାମାଜିକ ପ୍ରାଣୀ !

ନନା ନାହାନ୍ତି ! ଉମା ନାହିଁ ! ପାଟି ନାହିଁ ! ପାଟ଼ିବାକୁ ନାହାନ୍ତି ! ଉମା ଭାଇନା ନାହିଁ ! ଉମେଶ ନାହିଁ ! ଉମେଶଚରଣ ନାହାନ୍ତି ! ଭାଇନା ନାହିଁ ! ବ୍ରହ୍ମପୁର ପୁରୁଣା ବସଷ୍ଟାଣ୍ଡର ବିଜୟ ବୁକ୍ ଷ୍ଟୋରଠାରେ ସମସ୍ତେ ଅପେକ୍ଷା କରିଛନ୍ତି ଭାଇନା ଫେରିବ । ରିକ୍ସାବାଲାଠାରୁ ପ୍ରଫେସର୍ ପର୍ଯ୍ୟନ୍ତ । କିନ୍ତୁ ଭାଇନା ଗାଏବ୍ । ଇଏ ତ ନିତିଦିନିଆ ସାଧାରଣ କଥା । ସତରେ ଏଥର ମଧ୍ୟ ଫେରିପିବ କି ??

ଭାଇନାକୁ ଯିଏ ନେଇଛନ୍ତି ସେ ସମ୍ଭାଳି ପାରିବେ ତ ? ଭାଇନା ସର୍ବଦା ସଂଗ୍ରାମୀ ଓ ଜିଦ୍‌ଖୋର । ସେ ଯେଉଁଥିରେ ହାତ ଦେବ, ତାହା ଶେଷ ନ ହେବା ପର୍ଯ୍ୟନ୍ତ ତାର ବିଶ୍ରାମ ନାହିଁ କି ଶାନ୍ତି ନାହିଁ । ତାର ତ ବହୁତ କାମ ଅସମାପ୍ତ । ସେଥିପାଇଁ ନିଶ୍ଚୟ ସେ ଫେରି ଆସିବା ପାଇଁ ଯୁଝିବ । ତାର ଜିଦ୍ ଓ ଯୁକ୍ତି ପାଖରେ ସେ ନିଶ୍ଚୟ ହାର ମାନିବେ । ତାକୁ ଆସିବାକୁ ଦେବେ—ଅଭିଶାପ ନେଇ ନୁହେଁ, ଆଶୀର୍ବାଦ ନେଇ । ମୋର ତାଙ୍କ ନିକଟରେ ଏତିକି ମାତ୍ର ପ୍ରାର୍ଥନା ସେ ଫେରି ଆସୁ, ଶାନ୍ତିରେ ଆସୁ; ନ ହେଉ ପଛେ ଉମା ଭାଇନା, ମୋ ଭାଇନା ହୋଇ ଆସୁ । ସେ ସବୁବେଳେ ମୋ ଭାଇନା ହେଉ, ମୁଁ ତାର କୁନି ଭାଇଟିଏ ହୋଇ ରହିଥାଏ ।

ସୁଦର୍ଶନ ଆଚାର୍ଯ୍ୟ
ପ୍ରଫେସର, ଓଡ଼ିଆ ବିଭାଗ,
ବ୍ରହ୍ମପୁର ବିଶ୍ୱବିଦ୍ୟାଳୟ

# ॥ ବନ୍ଧୁ ପରି ବନ୍ଧୁ ସିନା ॥

ବନ୍ଧୁ ପରି ବନ୍ଧୁ ସିନା,
ଜୀବନରେ ଥିଲେ ମଳୟ ସୁବାସ ।
ତିରୋଧାନେ ସିଏ ପ୍ରଳୟ ବତାସ ।
ହେ ସାଥୀ ଉମେଶ ଅଭୁଲା ପରଶ    ଦେଲ ପ୍ରାଣେ ବିଡ଼ମ୍ବନା ।୧।

ଉମେଶ କେ ଦେଲ ନାମ,
ଉମା-ଈଶ ପରି ସିଦ୍ଧାନ୍ତ ଅଟଳ ।
ସଦାଶିବ ହରି ପରହିତେ ରତ ।
କର୍କଶ କୋମଳ ଦୁଇଭାବେ ମେଳ    ସାର୍ଥକ ସେ ନାମ-କର୍ମ ।୨।

କାହୁ ନ କହୁ ଯା ଗଲ,
ତୁମ ବିରହରେ ଉଦ୍‌ବେଳିତ ହୃଦ ।
ଆଳାପନେ ଆଉ କେ ଦେବ ଆହ୍ଲାଦ ।
ବାଲ୍ୟ ସହଚର କରିଗଲ ପର    କଲ ସିନା କଲବଲ ।୩।

ବାଲ୍ୟକାଳୁଁ ଏ ଯାବତ,
ଜୀବନ ତୁମର ସଂଗ୍ରାମ ମଶାଲ ।
ବହୁ ପ୍ରତିଭାରେ ସାଧନାର ଶାଳ ।
ମାନ୍ତିନିଷ୍ଠ ଭାବ ନର୍ମିକ ସ୍ୱଭାବ    ଅନ୍ୟାୟରେ ଖଡ୍‌ଗ ହସ୍ତ ।୪।

ସରକାରୀ ଯନ୍ତ୍ରୀ ସିନା,
ବିଜ୍ଞାନ ଜ୍ୟୋତିଷ ସାହିତ୍ୟର କଳା ।
ଗବେଷଣା କର୍ମେ ଲେଖନୀ ଚଞ୍ଚଳା ।
ପ୍ରଜ୍ଞାଦୀପ୍ତ ଚିନ୍ତା ନାହିଁ ଅନୁଚିନ୍ତା    ରଚନା ପ୍ରଦୀପ୍ତ ମନା ।୫।

ଅକ୍ଷୟ ଅକ୍ଷର କୀର୍ତ୍ତି,
ଜ୍ୟୋତିଷରେ ଗ୍ରନ୍ଥ ତିନି ଗୋଟି ରଚି ।
ତୁମ "ଅଶ୍ରୁ ଟୀକା" ଅଭିନବ ରୁଚି ।
ଜନମାନସରେ—ସଦା ସେ ସଞ୍ଚରେ    ବହୁମୁଖୀ ଭାବମୂର୍ତ୍ତି ।୬।

ଅବେଳରେ ଗଲ ସଖା,
ଜୀବ ଯାତାୟାତ ରଙ୍ଗମଞ୍ଚ ଭବ ।
ଖେଳ ଖେଳାଇ ତ ଭୁଲିଯିବ ଜୀବ ।
ସ୍ମୃତି ଥୋଇ ଦେଲ ବନ୍ଧୁ ଭୁଲିଗଲ    ଏକା ସ୍ମୃତି ପଟେ ଦେଖା ।୭।

ଜ୍ୟୋତିର୍ବିଦ୍ ନାରାୟଣ ପାଢ଼ୀ
ପାଲୁରୁ ବଙ୍ଗଳା, ବ୍ରହ୍ମପୁର

# କିଛି ସ୍ମୃତି : ବିସ୍ମୃତି ଭିତରୁ

Everyone is a moon and is havinga dark side of its own, which he never shows to anybody—ମାର୍କଟ୍ୱେଇନ୍‌ଙ୍କ ଏଇ ଉକ୍ତିଟି କିନ୍ତୁ ଉମା ଭାଇନାଙ୍କ ପାଖରେ ଯେମିତି ହାର ମାନି ନେଇଥିଲା ।

ଆମ ପ୍ରାଥମିକ ଦେଖା ସାକ୍ଷାତ ଓ ସାଧାରଣ କଥାବାର୍ତ୍ତା ବେଳେ ସେ ଆତ୍ମୀୟତାର ଅନ୍ତରଙ୍ଗତାରେ ମୋତେ ସଂପୂର୍ଣ୍ଣ ବାନ୍ଧି ପକାଇଥିଲେ । ସେ ମୋତେ ମୋ ନାମ ଧରି ଡାକୁଥିଲେ । କେବଳ ମୋତେ ନୁହେଁ, ଆମ କ୍ଷୁଦ୍ର ଦଳର ପ୍ରାୟ ସମସ୍ତଙ୍କୁ । ସୁଦର୍ଶନ, ସୂର୍ଯ୍ୟ, ରଘୁନନ୍ଦନ, ସତ୍ୟ—ଏଗୁଡ଼ିକ ଥିଲା ତାଙ୍କର ପ୍ରିୟ ନାମ ।

ଭାସ୍କର ଚାନ୍ଦ ହିଁ ଥିଲେ "ଭାସ୍କର ବାବୁ" । ମୃତ୍ୟୁ ପର୍ଯ୍ୟନ୍ତ ସେଇ ନାମଗୁଡ଼ିକ ସେମିତି ରହିଗଲା । ସମସ୍ତଙ୍କଠାରୁ ସେ ପ୍ରାୟ ବର୍ଷେ, ଦୁ' ବର୍ଷ ବଡ଼ କିନ୍ତୁ ସମସ୍ତଙ୍କ ସାଙ୍ଗ । ସେ ସମସ୍ତଙ୍କ ପାଇଁ ଥିଲେ ଉମା ଭାଇନା । ସେଇ ପ୍ରାଥମିକ ବନ୍ଧୁ ଜୀବନରେ ହିଁ ସେ ମୋତେ କହିଥିଲେ—"ସତ୍ୟ, ମୁଁ ଟିକିଏ ବିଦେଶୀ ପାନୀୟ ପ୍ରତି ଅଧିକ ଆସକ୍ତ । ତେଣୁ କେବେ ମତେ ସେଥି ପାଇଁ ଘୃଣା କରିବ ନାହିଁ ।"

ବନ୍ଧୁ ବାନ୍ଧବୀର ପ୍ରଥମ ପାହାଚରେ ଉମା ଭାଇନାଙ୍କ ସେଇ ଅନ୍ତରଙ୍ଗ ଅଭିବ୍ୟକ୍ତି ହିଁ ଥିଲା ମୋ' ବିଚାରରେ ମାର୍କଟ୍ୱେଇନ୍‌ଙ୍କ ଚନ୍ଦ୍ରର ଅନ୍ଧକାର ଦିଗ । ବିନା ସଂକୋଚରେ ସେ ନିଜକୁ ଉଦ୍‌ଭାସିତ କରାଇ ଦେଇଥିଲେ ତାଙ୍କ ବିଚାରର ଶାନ୍ତ, ଶିଷ୍ଟ, ସରଳ, ନିରାଡ଼ମ୍ବର ତଥା ସର୍ବ କନିଷ୍ଠ ଜଣେ ନବାଗତ ବନ୍ଧୁଙ୍କ ନିକଟରେ । ତାଙ୍କ ଚରିତ୍ରର ସେଇ ଦିଗଟିକୁ ବାଦ୍ ଦିଆଗଲେ ତାଙ୍କ ବ୍ୟକ୍ତିତ୍ୱରେ ଆଉ କୌଣସି ଅସମତା ନଥିଲା ଜୀବନର ଶେଷ ପର୍ଯ୍ୟନ୍ତ । ଏଇଠି କହି ରଖିବା ବିଶେଷ ଯୁକ୍ତିଯୁକ୍ତ ହେବ ଯେ ଆଧୁନିକତାର ଶ୍ରେଷ୍ଠ ସନ୍ତକ ବିଦେଶୀ ପାନୀୟ ତାଙ୍କୁ କବଳିତ କରି ନ ପାରି ତାଙ୍କ କବଳରେ ହିଁ ବନ୍ଦୀ ହୋଇ ରହିଗଲା ଶେଷଯାଏଁ । ତାର ପ୍ରଭାବଯୁକ୍ତ ହୋଇ ସେ କୌଣସି କୁକାର୍ଯ୍ୟ କରିଥିବାର ଉଦାହରଣ ଏ ପର୍ଯ୍ୟନ୍ତ ମିଳି ନାହିଁ ।

କିନ୍ତୁ ତଥାପି ଟେଲିଫୋନ୍ ଯୋଗେ ଉମାଭାଇନାଙ୍କ ମୃତ୍ୟୁ ସମ୍ବାଦ ଭାସ୍କର ବାବୁଙ୍କ ଠାରୁ ଶୁଣିବା ପରେ ମୁହୂର୍ତ୍ତରେ ମୋର ପ୍ରଥମ ମାନସିକ ପ୍ରତିକ୍ରିୟା ଥିଲା ସେଇ ଅନ୍ଧକାର ବିରୁଦ୍ଧରେ ନୀରବ ଅଭିଯୋଗ । 'ପଞ୍ଚ

ସଖା ଭିତରେ ସଖାଙ୍କୁ ବିଚ୍ଛିନ୍ନ କରିବାପାଇଁ ତାର ହାତ କିଛି କମ୍ ଲମ୍ବା ନୁହେଁ । ସମୟର ରଥ ଚକ ତଳେ ପେଷି ହୋଇ ଆମେ ସ୍ୱ ନାମିତ ପଞ୍ଚସଖାରେ ପରିଣତ ହୋଇଗଲୁ । ଆମ ସମ୍ପର୍କ ପାରିବାରିକ ସମ୍ପର୍କରେ ବାନ୍ଧି ହୋଇଗଲା । ଆମ ପଞ୍ଚସଖାର ପ୍ରଥମ ମିଳନ ଉତ୍ସବ ଆରମ୍ଭ ହୋଇ ଥିଲା ସୁଦର୍ଶନ ଆଚାର୍ଯ୍ୟଙ୍କ ହାଣ୍ଡିବନ୍ଧ ସାହିସ୍ଥ ଭଡାଘରେ । ତା ପରେ ଚାଲିଲା ଶାନ୍ତମତ ଭୋଜିର ଆୟୋଜନ, ସାଂଧ୍ୟ ମିଳନର ଆୟୋଜନ । ଆଜି ଯାଙ୍କ ଘରେ ତ କାଲି ତାଙ୍କ ଘରେ । ଖାଇବା ପିଇବା ତ ସାଧାରଣ ଘଟଣା । ଆମ ସମସ୍ତଙ୍କ ପାଇଁ ଯାହା ଅସାଧାରଣ ଥିଲା ଅନବରତ ସାହିତ୍ୟ ଆଲୋଚନା। ଆମେ ସବୁ ଏ ଦେଶର ସ୍ୱନାମଧନ୍ୟ ସାହିତ୍ୟିକ ନଥିଲୁ, ତଥାପି ତାହା ଆମମାନଙ୍କ ଜୀବନର ଉଲ୍ଲେଖଯୋଗ୍ୟ ଘଟଣା ଥିଲା । ସେଥିଲା ପ୍ରାୟ ୧୯୬୮ ମସିହାର କଥା ।

ମୁଁ ଥିଲି ସେତେବେଳେ ଖଲିକୋଟ କଲେଜର ସ୍ନାତକୋତ୍ତର ଛାତ୍ର ଜୀବନରେ । ସୂର୍ଯ୍ୟ ବାବୁ ଜାମଶଲାପାଠରୁ ଦୀର୍ଘ ଛୁଟି ନେଇ ବ୍ରହ୍ମପୁରରେ । ଭାସ୍କର ବାବୁଙ୍କ ବହି ଦୋକାନ କୈଶୋର ଅତିକ୍ରମ କରୁଥିଲା । ସୁଦର୍ଶନ ବାବୁ ଖଲିକୋଟ କଲେଜରେ ଅଧ୍ୟାପକ । ଉମା ଭାଇନାର ଘରକର ସେଇ ସହରରେ ।

ଆମମାନଙ୍କ ଖଟି ହେବ ପ୍ରତିଦିନ ସଂଧ୍ୟାରେ; ଆଉ କେଉଁଠି ନ ହେଲେ ବାଗକ୍ସ ଉପରେ ଥିବା 'ବିଜୟ ବୁକ୍ ଷ୍ଟୋର୍'ରେ । ଥରକୁ ଥର ଚା' ପିଆ ହେଉଥିବ—ବିଭିନ୍ନ ବହି ଉପରେ ହେଉଥିବ ଆଲୋଚନା । ବିଶେଷକରି ମୋର ସବୁଲେଖା ପ୍ରତି ଥିଲା ଉମା ଭାଇନାଙ୍କ ଅସାମାନ୍ୟ ଆଗ୍ରହ । ତେବେ ଆଧୁନିକତାକୁ ତାଙ୍କର ଭାରି ନାପସନ୍ଦ, ବିଶେଷ କରି ଆଧୁନିକ ମୁକ୍ତଛନ୍ଦର କବିତାକୁ । ଆମ ଆଲୋଚନାର ପରିସର ଏମିବାର ଆଙ୍ଗୁଠି ଭଳି । କେତେବେଳେ ଏପଟରେ ଲମ୍ବି ଗଲାଣି ତ ଆଉ କେତେବେଳେ ଅନ୍ୟ ଦିଗରେ । ସାହିତ୍ୟରୁ ରାଜନୀତି, ଅର୍ଥନୀତି, ସମାଜନୀତି ପୁଣି ସାଧନ ନୀତି । ଏଭଳି ଆସରରେ ଆମ ସହିତ ଅନେକ ବେଳେ ଯୋଗ ଦିଅନ୍ତି ଅଧ୍ୟାପକ ସୀତାରାମ ମହାପାତ୍ର ଓ ଅଧ୍ୟାପକ ନାରାୟଣ ଶତପଥୀ ପ୍ରମୁଖମାନେ । ଦୁଇଟି ଲମ୍ବା ବେଞ୍ଚ ଓ ଗୋଟିଏ ଦୁଇଟି ଷ୍ଟୁଲ୍ ସବୁବେଳେ ସଜଡା ହୋଇ ରହୁଥିଲା ଆମ ପାଇଁ । ଅଧିକାଂଶବେଳେ ଦୋକାନର ସ୍ଲେଟ ବାରଣ୍ଡା ଅତିକ୍ରମ କରି ବାହାରେ ବସୁଥିଲୁ । ସେଇଠି ଖଟି ହେବହିଁ ହେବ । ଏପରିକି ବର୍ଷା ହେଲେ ବି ବସିବୁ ଦୋକାନ ଭିତରେ ।

ସାହିତ୍ୟଚର୍ଚ୍ଚା କରିବା ଲାଗି ଆମେ ଗୋଷ୍ଠୀ ଗଠନ କରିନଥିଲୁ । କାରଣ ସେତେବେଳ ପର୍ଯ୍ୟନ୍ତ ବାସ୍ତବରେ ଉମା ଭାଇନା ଓଡ଼ିଆ ସାହିତ୍ୟର ବଳୟ ଠାରୁ ଥିଲେ ଦୂରରେ । କିନ୍ତୁ ସ୍ୱ-ସ୍ୱୀକୃତି ପଞ୍ଚସଖା ଗଠିତ ହୋଇ ସାରିବାପରେ ସାହିତ୍ୟ ଆଲୋଚନା ଆମ୍ଭମାନଙ୍କର ମୁଖ୍ୟ ହୋଇ ଯାଇଥିଲା । ମୁଁ ଥିଲି ସାହିତ୍ୟିକ ପର କଅଁଳୁଥିବା କନପ୍ରାନ୍ । ମୋ'ପାଇଁ ତ ତାହା ନିଶ୍ଚିତ ପ୍ରେରଣାଦାୟକ ଥିଲା ଏବଂ ସେଭଳି ଆଲୋଚନା ଓ ଗୋଷ୍ଠୀ ଗଠନ ହିଁ ଉମା ଭାଇନାଙ୍କୁ ମଧ୍ୟ ଓଡ଼ିଆ ସାହିତ୍ୟ ଜଗତକୁ ଟାଣି ଆଣିଥିଲା । ତାହାର ସ୍ମାରକୀ "ଅଗ୍ନିଟୀକା" ଓ "ଘୂମନ୍ତ ମାଳମା" ଭଳି ଏକାଧିକବାର ପ୍ରକାଶ କରିଥିବା ଉପନ୍ୟାସ ଓ ରଜନୀଗନ୍ଧାର ପ୍ରଶ୍ନ ଭଳି ଗଳ୍ପ ସଂକଳନ । କେଉଁ ପିଲାବେଳେ ସ୍କୁଲ କଲେଜର ମାଗାଜିନ୍ ପାଇଁ ଲେଖା ହୋଇଥିବା ସାହିତ୍ୟିକ ଚେତନା ଦୀର୍ଘକାଳ ନୀରବ ନିଶ୍ଚଳ ହୋଇ ସୁପ୍ତ ଅବସ୍ଥାରେ ପଡ଼ି ରହିଥିଲା ଯେମିତି । ବେଶ୍ ଉଜୁଡ଼ି ଯାଇଥିଲା ସେତିକିବେଳେ ଉର୍ବର ଉପତ୍ୟକା ପାଇଁ । ତାଙ୍କର ଯେ ସାହିତ୍ୟିକ ପ୍ରବୃତ୍ତି ନଥିଲା ତା'ନୁହେଁ ସେ ଅନେକ ଇଂରାଜୀ ବହି ପଢ଼ାପଢ଼ି କରୁଥିଲେ ସେତେବେଳ ପର୍ଯ୍ୟନ୍ତ । ଓଡ଼ିଆ କମ୍ । ତେଣୁ ସେଇ କେତେଦିନ ମୋର ବରାବର ଅଭିଯୋଗ ଥିଲା—"ତମେ ଓଡ଼ିଆ ବହି ପଢ଼ିବା ଆବଶ୍ୟକ ଏବଂ ବହୁ ପରିମାଣରେ ।" ସେଥିପାଇଁ ମୋର ଦୁଇଟି ଯୁକ୍ତିଥିଲା—ଲେଖନ ଶୈଳୀ ଅଧିକ ମାର୍ଜିତ ହେବ ଏବଂ ଆମ ସହ ଆଲୋଚନାରେ ଅଧିକ ସକ୍ରିୟ ସହଯୋଗ ଦେଇହେବ । ମୋର ଉଭୟ ଯୁକ୍ତିକୁ ସେ ଗ୍ରହଣ କରି ନେଇଥିଲେ । ଓଡ଼ିଆ ବହି/ପତ୍ରପତ୍ରିକା ପଢ଼ିବା ଜୋର୍ ସୋର୍‌ରେ ଆରମ୍ଭ କରିଦେଇଥିଲେ । ଚାଲିଥିଲା ଶେଷ ପର୍ଯ୍ୟନ୍ତ ।

କିନ୍ତୁ ପ୍ରାଥମିକ ସାହିତ୍ୟିକ ଜୀବନରୁ ଆରମ୍ଭ କରି ଶେଷ ପର୍ଯ୍ୟନ୍ତ ସେ ସାହିତ୍ୟ ଅନୁଷ୍ଠାନଗୁଡ଼ିକ ସହ ସଂଯୁକ୍ତ ହେବା ପସନ୍ଦ କରୁନଥିଲେ । ସେତିକିବେଳେ ବ୍ରହ୍ମପୁରର ସୁପ୍ତ ସାହିତ୍ୟିକ ବାତାବରଣ ସାମାନ୍ୟ ହେଲେ ବି, ମୁଖର କରିବା ପାଇଁ ଆମେ ଗଠନ କରିଥିଲୁ—ବ୍ରହ୍ମପୁର ଯୁବଲେଖକ ପରିଷଦ । ଅଧ୍ୟାପକ ନାରାୟଣ ଶତପଥୀ ଥିଲେ ସଭାପତି ଓ ମୁଁ ସମ୍ପାଦକ । ଦଳୁଆ ସାହିସ୍ଥ ଶ୍ରୀବତ୍ସ ନାୟକଙ୍କ ସଞ୍ଚାଳନରେ ଚାଲୁଥିବା "ଗାନ୍ଧୀ ଶାନ୍ତି ପ୍ରତିଷ୍ଠାନ" ଥିଲା ଆମ ସାପ୍ତାହିକ ସାହିତ୍ୟ ଆସରର କେନ୍ଦ୍ର । ତତ୍କାଳୀନ ବ୍ରହ୍ମପୁରର ପ୍ରାୟ ସବୁ ସାହିତ୍ୟପ୍ରାଣ ବ୍ୟକ୍ତି

ସେଠାକୁ ଆସୁଥିଲେ । ଆମ୍ଭମାନଙ୍କ ସହିତ ମଧ୍ୟ ଏକାକାର ହୋଇ ଯାଉଥିଲେ ଅଧ୍ୟାପକ ରାଜକିଶୋର ରାୟ (C. I. of Schools), ପ୍ରକାଶ ସାହିତ୍ୟିକ ବ୍ରହ୍ମାନନ୍ଦ ପଣ୍ଡା ସ୍ୱର୍ଗୀୟ, ଶ୍ରୀ ବ୍ରଜମୋହନ ସାମନ୍ତରାୟ (D. I. of Schools) ପ୍ରମୁଖଙ୍କ ସମେତ ଅନେକ ତରୁଣ କବି । କିନ୍ତୁ ମୋର ସମସ୍ତ ଅନୁରୋଧ ସତ୍ତ୍ୱେ ଉମା ଭାଇନା ସେଠାକୁ ଯିବାକୁ ମଙ୍ଗୁ-ନଥିଲେ । ସେଇ ମନୋବୃତ୍ତି ହିଁ ରହି ଯାଇଥିଲା ଶେଷ ପର୍ଯ୍ୟନ୍ତ । ଯଦିବା ସୁନାମିତ ପଞ୍ଚସଖାର ଆମଭଳି ସଖାମାନେ ଏକଦା ବ୍ରହ୍ମପୁରର ଅଗ୍ରଣୀ ସାହିତ୍ୟ ସଂସ୍ଥା "ଫଲ୍‌ଗୁ"ରେ ପ୍ରମୁଖ ସଭ୍ୟଭାବରେ ଯୋଗ ଦେଇଥିଲୁ, ଉମା ଭାଇନା ସେତେଟା ସକ୍ରିୟ ଭୂମିକା ନେଇ ନଥିଲେ ।

ଗଞ୍ଜାମ ଓ କୋରାପୁଟର ଅନେକ ଶ୍ରମିକ ସଙ୍ଗଠନ ସହ ସେ ସଂପୃକ୍ତ ଥିଲେ ସବୁବେଳେ । ବିଭିନ୍ନ ସମସ୍ୟା ବେଳେ ପରାମର୍ଶ ପାଇଁ ଅନେକେ ତାଙ୍କ ନିକଟକୁ ଆସୁଥିବାର ମୁଁ ଲକ୍ଷ୍ୟ କରିଛି । ବୃତ୍ତିଗତ-କ୍ଷେତ୍ରରେ ମଧ୍ୟ ତାଙ୍କ ନିଷ୍ଠାର ଅନେକ ଅନେକ ପ୍ରମାଣ ମହଜୁଦ୍ । ବ୍ରହ୍ମପୁରର ସିନେମାହଲ୍ ନିର୍ମାଣରେ ମୁଖ୍ୟ କାର୍ଯ୍ୟଠେଦାର ସେ । ତାଙ୍କର ପ୍ଲାନ୍; ତାଙ୍କର ତତ୍ତ୍ୱାବଧାନ । ସେଭଳି ବଡ ବଡ଼ ଯୋଜନା ପାଇଁ କୋରାପୁଟର ନବରଙ୍ଗପୁରରୁ ଆରମ୍ଭ କରି ଆହୁରି କେତେ କୁଆଡ଼ୁ ଆସନ୍ତି ତାଙ୍କର ନିକଟକୁ । ତାଙ୍କୁ ନେଇଯାଆନ୍ତି କାର୍ଯ୍ୟସ୍ଥଳୀକୁ । ସାହିତ୍ୟ, ଶ୍ରମିକ ସଂଗଠନ ତଥା ନିଜ ବୃତ୍ତିକୁ ଆପଣାଇବାଭଳି ଜ୍ୟୋତିଷ ଶାସ୍ତ୍ରକୁ ମଧ୍ୟ ଆପଣାଇଥିଲେ ଉମା ଭାଇନା । ତାହାକୁ ଲୋକପ୍ରିୟ କରାଇବା ଉଦ୍ୟମ କରି ସରଳ ଭାଷା ଓ ସହଜ ଭାବରେ ଖଣ୍ଡେ ଦୁଇଖଣ୍ଡ ବହି ମଧ୍ୟ ଲେଖି ଯାଇଛନ୍ତି । ଜାତକ ଭଲ ଦେଖୁଥିଲେ ସେ । ଆମମାନଙ୍କ ଜାତକ ଅଧ୍ୟୟନ କଲାବେଳେ ନିଜ ଜାତକ ବି ଅଧ୍ୟୟନ କରୁଥିଲେ ଅନେକ ସମୟରେ ।

ହେଲେ ସବୁ ଜାତକ ଦେଖି ବି ସବା ପ୍ରଥମେ ସେ ଆମମାନଙ୍କୁ ଠକି ଦେବେ ବୋଲି ତ କେବେ କହିଥିବାର ମୋର ମନେ ପଡୁନି !


**ସତ୍ୟନାରାୟଣ ମହାପାତ୍ର**

୩/୧୦ ସେନ୍‌ଟସ୍ କଲୋନୀ

ବରମୁଣ୍ଡା, ଭୁବନେଶ୍ୱର-୩

# ସ୍ୱର୍ଗଲୋକକୁ ଖଣ୍ଡିଏ ଚିଠି

ମାନମାସ୍ପୁ ଉମା ଭାଇନା !

ଲୋକାନ୍ତରରୁ ମୋର ଆନ୍ତରିକ ପ୍ରଣାମ ।

ସତରେ, ତୁମେ କେଡ଼େ ତରବରରେ ଚାଲିଗଲ ! ଉପନ୍ୟାସ-ପାଣ୍ଡୁଲିପିଟା ପ୍ରେସ୍‌କୁ ଦିବା ଯାଏ କିମ୍ବା 'ଆମ ନେହରୁ' ଉଦ୍‌ଘାଟିତ ହେବା ପର୍ଯ୍ୟନ୍ତ ବି ଅଟକିଲ ନାହିଁ । ବାଷ୍ପୀୟ ଯାନ ଦିନା ବାରମ୍ବାର ବିଭିନ୍ନ ଷ୍ଟେସନରେ ପଡି ପଡ଼ି ଯାଉଛି, ତୁମେ ସେଇ ଦିବ୍ୟ ପୁଷ୍ପକ ଯାନରେ ଆଖି ଝିମଟଟାରେ ଅଦୃଶ୍ୟ ହୋଇଗଲ । ତୁମ ଗତ ଶତାବ୍ଦୀ ଏକ୍ସପ୍ରେସକୁ ଟପିଗଲ, ଆଗାମୀ ଶତାବ୍ଦୀକୁ ଆଉ ଅପେକ୍ଷା କଲନି ! ଏତେ ପ୍ରଖର ଗତିରେ ଉଭାନ ହୋଇଗଲ ଯେ ସ୍ମୃତିର ଚିହ୍ନକଗୁଡ଼ାକ ସବୁ ଏଠାରେ ଛୁଡ଼ି ଚାଲିଗଲ । ସେସବୁ ଅମୂଲ୍ୟ ସ୍ମୃତିରତ୍ନରାଜି ଆଜି ଯେମିତି ସେମିତି ଝକ୍ ଝକ୍ କରୁଛି ।

ଚକଟୀର ଆମ୍ବତୋଟା (ଯେଉଁଠି ସାଥି ମେଳରେ ଟେକାମାରି ଆମ୍ବ ଝାଡୁଥିଲ) ଆଜି ତୁମ ବିନା ଶୁଷ୍କମରୁସ ମନେ ହେଉଛି । କଟକ ଭଂଜନପୁରଙ୍କ ସ୍କୁଲ ହତାର ଯେଉଁ ପଣସ ଗଛରୁ ପାଚିଲା ପଣସ ଧରିବାକୁ ଯାଇ ଆଖିଟିକୁ ସାମୟିକ ଭାବେ ନଷ୍ଟ କରିଦେଇଥିଲ ଓ ପାଠପଢା ବର୍ଷେ ବନ୍ଦ ରହିଥିଲା, ସେଠାରେ ସେଇ ଗଛଟି ଆଉ ନାହିଁ । ଛ ମାସରେ ଆଖି ଭଲହେବା ପରେ ତୁମେ ସାମନ୍ତଆପଲ୍ଲୀ ସ୍କୁଲର ଅବୈତନିକ ଶିକ୍ଷକ ସାଜିଥିଲ, ମନପ୍ରାଣଢାଳି ପିଲାମାନଙ୍କୁ ଗଣିତ ପଢ଼ାଉଥିଲ । ସେସବୁ ପିଲା ଆଜି ପ୍ରୌଢ଼ ଓ ପ୍ରତିଷ୍ଠିତ – କିଏ ନେତା, କିଏ ବ୍ୟବସାୟୀ, କିଏ ପଦସ୍ଥ କର୍ମଧ୍ୟକ୍ଷ । ସେମାନେ ସମସ୍ତେ ତୁମକୁ ଝୁରୁଛନ୍ତି ।

ତୁମର ମନେପଡୁଛି ଭାଇନା, ସତ ଘରଟାରୁ ଉଠି ଆନନ୍ଦ ଆଚାର୍ଯ୍ୟଙ୍କୁ ଉଠାଇ 'କଫ୍-ଟି' (କଣ୍ଡେନସ୍‌ଡ୍ ମିଲ୍‌କରେ ତିନି ଭାଗ ଚା ଗୁଣ୍ଡ ଓ ଭାଗେ କଫି ଗୁଣ୍ଡ ମିଶାଇ) କଲପରେ କୃତ୍ତିବାସଙ୍କୁ ଓ ମୋତିଙ୍କେ

ଉଠାଉଥିଲ ଗଣିତ ଶିଖାଇବା ପାଇଁ । ତୁମେ ସେତେବେଳେ ଏ ତିନି ମାସ ସେମିତି କଷ୍ଟ ନ ପଡ଼ିଥିଲେ ଆମେ ତିନି ଜଣ କଣ ମାଟ୍ରିକ୍ ପରୀକ୍ଷା ପାଶ କରିଥାନ୍ତୁ ନା ଆଜି ଏତେ ଉପରକୁ ଉଠିପାରିଥାନ୍ତୁ ! ତୁମର ସେଭଳି ସ୍ୱେଚ୍ଛା ପ୍ରଣୋଦିତ ଜ୍ଞାନବିତରଣ ସ୍ପୃହାର ପଟାନ୍ତର କାହିଁ ?

ଅସୁସ୍ଥତାବଶତଃ ମୁଁ ଯେଉଁ କେତେଦିନ ଛୁଟିରେ ରହିଥିଲି, ତୁମେ କେତେ ବ୍ୟସ୍ତ ବିବ୍ରତ ହୋଇ ପଡ଼ିନଥିଲ ? ରିକ୍ସାଟିଏ ଯୋଗାଡ଼ କରି ତୁମର ଲଠୀ ଭଉଣୋଇଙ୍କ ପାଖକୁ ମୋତେ ଚେରମୂଳ ଔଷଧ ଖାଇବା ପାଇଁ ମାସେ ପର୍ଯ୍ୟନ୍ତ ସବୁ ବ୍ୟବସ୍ଥା କରିଥିଲ । ଆଉ କିଏ କାହିଁ ତ କାହାକୁ ଏତେ ଦରଦ ଦେଖାଇବାର ମୁଁ ଦେଖିନି ।

ମୋର କକା ଯେତେବେଳେ ଜଣ୍ଡିସ୍‌ରେ ଶେଷାବସ୍ଥାରେ ପହଞ୍ଚିଥିଲେ, ଡ଼ାକ୍ତର ଆଶା ଛାଡ଼ି ଦେଇଥିଲେ, ସେତେବେଳେ ତୁମେ ଦେବଦୂତ ଭଳି ଆସି ତାଙ୍କର କୋଷ୍ଠୀ ଗଣନା କରି ତିନିଦିନ ପାଇଁ ଗ୍ରହଶାନ୍ତି ହୋମ କରିବା ଲାଗି ପରାମର୍ଶ ଦେଇଥିଲ । ଖାଲି ସେତିକି ନୁହଁ, ହୋମ, ଯଜ୍ଞ, ଦାନଧର୍ମ ସବୁର ଟିକନିଖି ତଦାରଖ କରିଥିଲ । ଫଳରେ କକା ଚତୁର୍ଥ ଦିନ ସମ୍ପୂର୍ଣ୍ଣ ସୁସ୍ଥ ହୋଇ ଉଠିଥିଲେ । ତୁମର ନିଜ ବେଳକୁ କ'ଣ ନିଜର ଜାତକଟା ଦେଖିପାରିଲନି; ନା । ନିଜେ ଅନ୍ୟ ଲୋକକୁ ବଞ୍ଚାଇବା ପାଇଁ ବ୍ୟଗ୍ର ହୋଇପଡ଼ିଲ ! ନହେଲେ 'ମୁଁ ମରିଗଲେ କାମରେ ଆସିବ' କହି ଫଟୋଟିଏ ବାଜପୁ ବୁକ୍ ଷ୍ଟୋରରେ ଛାଡ଼ିଯାଇଥାନ୍ତ କି ?

ତୁମେ କ'ଣ ସତରେ ଭୁଲିଗଲ ନୂଆପଡ଼ା ହାଇସ୍କୁଲରେ ପଢ଼ିବା ବେଳର ସହପାଠୀଙ୍କ ସ୍ନେହ; ତତ୍କାଳୀନ ହେଡ଼ମାଷ୍ଟ୍ରଙ୍କ ଆଦର, ଆଶ୍ୱାସନା ! ପୁରୀ ଗିଲସରେ ଗିଲସେ ଲେଖା ଲୁହାପିଆ ଘଟଣା । ଆଉ, ସେଇ ସରସୀ ! "...ନଳିମା ନଳିମା ନଳିମାରେ ପୁରିତ...!" ତୁମ 'ଅଶ୍ରୁଟୀକା'ର ଜୀବନ୍ତ ନାୟିକାକୁ ସୁମରି ସୁମରି ଚକଟୀ ବଙ୍ଗଳାରେ ଘଣ୍ଟା ଘଣ୍ଟା ଧରି ମୂର୍ଚ୍ଛିତ ଅବସ୍ଥାରେ ଶୋଇ ରହିବାର ସେଇ ଦିନଗୁଡ଼ାକ ସତରେ କ'ଣ ପାଶୋରି ହୋଇଗଲା ! ପାଶୋରି ଗଲ ସେଇ ବନ୍ଧୁ ବାନ୍ଧବଙ୍କୁ ଯାହାଙ୍କ ପାଇଁ ପନ୍ଦର ପୃଷ୍ଠାର ଦୀର୍ଘ କବିତାଟି ଲେଖିଥିଲ ଆଉ ପାଣ୍ଡୁଲିପିଟି ଛାଡ଼ି

ଦେଇଗଲ ଅନୁଜ ବିଜୟଙ୍କ ପାଖରେ ! "ଏଇ କୁଆଡ଼େ ଚାଲିଗଲ, ଖୋଜୁଛି" କହି ରିକ୍ସାରେ କଟକ କଲେଜଟିର ଆଖପାଖରେ ଘୂରି ଘୂରି କ'ଣ ସେଦିନ ତାକୁ ଆଉ ଠାବ କରିପାରିଲ ! ନା' ସେଦିନ ପାଇ ନଥିଲ । ସେଇ ବାସ୍ତବ ନାୟିକାଟି ପାଇଁ ତୁମେ ତ ସୃଷ୍ଟି କଲ 'ଘୁମନ୍ତ ମାଳମା'; ଆଉ ତୃତୀୟ ଉପନ୍ୟାସର ଚରିତ୍ରଟିକୁ ପାଣ୍ଡୁଲିପିରେ ଡୋରି ବାନ୍ଧି ଛାଡ଼ିଦେଇଗଲ, ଯେମିତି ସେ ଅଲୋଡ଼ା, ଅନାଦୃତା !

'ସୀତା ଲବକୁଶ'ର ଚିତ୍ରନାଟ୍ୟ ଓ ଗୀତ ରଚନା ପାଇଁ ଟାଙ୍ଗଣାପଲ୍ଲୀ କ୍ୱାର୍ଟର୍ସରେ କେତେ ଅତନ୍ଦ୍ର ରଜନୀ ବିତାଇଛ, ତାର ହିସାବ ଏତେ ଶୀଘ୍ର କ'ଣ ଭୁଲିଗଲ ? ଆଜି ସେଇ ତିନିଦିନର କଥା ! ମୁଁ, ଭାସ୍କର ବାବୁ ଓ ରଘୁନନ୍ଦନ ବସି ଯେଭଳି ସେଠାରେ ସେଦିନ କୃତିର ରସାସ୍ୱାଦନ କରିଥିଲୁ ! ଆଜି, ସେଇ ଅବିଶ୍ୱାସ୍ୟ ସନ୍ଧ୍ୟାର ସ୍ମୃତି ! ଏସିଆନ୍ ହୋଟେଲ କୋଠରୀରେ ଯେବେ ଫାଇନାଲ୍ ଡ୍ରିଲ୍ ହେଲ ସ୍ୱର୍ଗତ ନାରାୟଣ ରାଓଙ୍କ ସାଙ୍ଗରେ !

ଚଳଚ୍ଚିତ୍ର ସଂଳାପ ଓ ସଂଗୀତର ମୂର୍ଚ୍ଛନାରେ ଅଗଣିତ ଦର୍ଶକଙ୍କ ଚିତ୍ତ ଲୋଭାଇସାରି ତୁମେ ମନସ୍ଥ କଲ ରାମାୟଣରେ ବ୍ରହ୍ମତ୍ୱର ସତ୍ତା ପ୍ରତିପାଦନ କରିବା ପାଇଁ । ସେଇ ବ୍ରହ୍ମତ୍ୱର ସନ୍ଧାନ କରି କରି ଶେଷରେ କ'ଣ ନିରାକାର ପାଲଟିଗଲ ପରଂବ୍ରହ୍ମରେ ବିଲୀନ ହୋଇ ! ତୁମେ ତ ଜଣେ ପ୍ରଚଣ୍ଡ ପ୍ରତିଭାସଂପନ୍ନ ଯନ୍ତ୍ରୀ ଥିଲ, ଗବେଷଣା କରୁଥିଲ । ହୀରାକୁଦ ବନ୍ଧର ଦୋଷତ୍ରୁଟି ଦର୍ଶାଇ ତୁମେ ବହୁ ବିଶେଷଜ୍ଞଙ୍କୁ ଚମକାଇଦେଲ; ଚିଲିକାର ଭବିଷ୍ୟତ ନେଇ ଅହରହ ଚିନ୍ତା କଲ; ଆଜବେଷ୍ଟସ୍ କର୍କଟ ରୋଗର ଏକ କାରଣ ବୋଲି ପ୍ରମାଣ ଦେଲ । ବାରମ୍ବାର ସ୍ୱର୍ଣ୍ଣପଦକ ପାଇଲ । ଏତେ ଶୀଘ୍ର ସଂସାର ଚକ୍ଷୁ ବୁଜିଦେଇ କ'ଣ ଠିକ୍ କଲ ?

ଏଇ ଜିଲ୍ଲାର ତଳିଆ କର୍ମଚାରୀ ଯିଏ ଯୋଉଠି ହଇରାଣ ହରକତ ହେଉଥିଲେ କିମ୍ବା ଅନ୍ୟାୟର ଶରବ୍ୟ ହେଉଥିଲେ, ତା ପାଇଁ ତୁମେ ଯଥାଶକ୍ତି ଲଢ଼ି ନ୍ୟାୟ ଦିଆଉଥିଲ । ରୋଡ ପରିବହନ କର୍ମଚାରୀ, ପାମ୍‌ବିଚ ହୋଟେଲର କର୍ମଚାରୀ, ସିନେମା ହଲ କର୍ମଚାରୀ ସମସ୍ତଙ୍କର ସୁଅ ଛୁଟୁଥିଲା

ତୁମ ପାଖକୁ । ଏବେ ସେମାନେ ଯିବେ କୁଆଡେ ? ହାତରୁ ଖାଇ ଘୋଡା ଆଗରେ ନାଚିବା ଲୋକଟିଏ ମିଳିବ କୋଉଠି ? ମନେଅଛି ଭାଇନା, ମୋର ଯାମଶୋଳାଘାଟରୁ ବଦଳି ପାଇଁ ତୁମେ ତତ୍କାଳୀନ କମିଶନରଙ୍କ ସହିତ ଝଗଡା କରିଥିଲ, ଆଉ ସେ ତୁମ ଯୁକ୍ତି କାଟି ପାରିନଥିଲେ ! ଆଜି ହିମାଂଶୁ ବାବୁ କହିଥିଲେ, ଆମେ ଗୋଟାଏ ଖାନା କମିଶନର ସାମନା କରିବୁ ସିନା, ଜଣେ ଲେଖକର ପ୍ରତିଭାର ପ୍ରତିବନ୍ଧକ ହେବୁନାହିଁ । ତୁମ ପ୍ରତି ତାଙ୍କର କେତେ ସହାନୁଭୂତି !

ଶିଶୁ ଲେଖକ ଓ 'ସଂସାର' ସଂପାଦକ ସ୍ୱର୍ଗତ ରାମକୃଷ୍ଣ ନନ୍ଦଙ୍କ ଆବେଗଭରା ଆଲିଙ୍ଗନ କ'ଣ ଭୁଲିଗଲ ? ବାଲିଅନ୍ତା ମଞ୍ଚରେ ତୁମର ହାସ୍ୟାଭିନୟରେ ମୁଗ୍ଧହୋଇ ସେ ରାତିରେ କୁଣ୍ଢାଇ ପକାଇବା କଥା ! ପୁଣି ତୁମେ 'ଅଶ୍ରୁ ଟୀକା' ବହିଟି ତାଙ୍କୁ ଦେବା ଦିନ ତାହା ସ୍ମରଣ କରାଇବା ଘଟଣା ? ସେଇ ବାଲିଅନ୍ତାକୁ ମୁଁ ଯାଇଥିଲି ମନେ ଅଛିନା ? ସେହିଦିନ ତୁମକୁ ସେଠାରେ ବଡାପୁ ସମ୍ବର୍ଦ୍ଧନା ଦିଆଯାଉଥିଲା । ମୋତେ ଓ ସାଉକାରଙ୍କୁ ତୁମେ ବାଧ୍ୟ କରିଥିଲ ଭୋଜି ଖାଇବା ପାଇଁ; ଆଉ ତା ପରେ ନିଜେ ଆମ ସାଙ୍ଗରେ ସାଇକେଲଟିଏ ଧରି ବାହାରି ପଡ଼ିଥିଲ 'ନଅ ନମ୍ବ୍' ପର୍ଯ୍ୟନ୍ତ ।

ମନେ ଅଛି ଭାଇନା ! ସେହି ରାତିର ବିଳମ୍ବିତ ପ୍ରହରରେ ସାଉକାର (ପ୍ରତାପଚନ୍ଦ୍ର ପାଢ଼ୀ)ଙ୍କ ବସାଘରେ ମୋ ଜାତକ ଦେଖି ତୁମେ କହିଥିଲ—

"ତୁମର ଆଇ. ଏ. ଏସ୍. ହେଲାଭଳି ଦିଶୁନାହିଁ । ଓ. ଏ. ଏସ୍. ନିଶ୍ଚୟ ପାଇବ କିନ୍ତୁ ଓ. ଏ. ଏସ୍. କି ଓ. ପି. ଏସ୍.ରେ ଯାଇ ପାରିବନି । ଓ. ଏଫ୍. ଏସ. ଚାକରିଟା ପକ୍କା ।" ଆହୁରି କହିଥିଲ—"ତୁମର ପ୍ରଥମ ଇସ୍ୟୁ ଝିଅଟିଏ ହେବ ।" ପଞ୍ଚତିରିଶ ବର୍ଷ ତଳର ସେଇ କଥା ଏଇ କାଲିପରି ଲାଗୁଛି, ତୁମେ କ'ଣ ଭୁଲିଗଲ ? ଅନ୍ତତଃ ଏଇ ଦଶବର୍ଷ ତଳର ଘଟଣାଟା ତ ମନେଥିବ । ଲେକ୍‌ଭ୍ୟୁ ଲଜ୍‌ରେ ବିପିନ ବାବୁ (ତତ୍କାଳୀନ ଏସ୍. ପି.)ଙ୍କ ଜାତକ ଦେଖି ତାଙ୍କୁ କହିଥିଲ—"ଛଅ ମାସ ପରେ ମାଁଙ୍କ ପ୍ରତି ବିପଦ ଅଛି ।" ସେଇ ଭବିଷ୍ୟତବାଣୀଟା ବି ସତ ହୋଇଯାଇଥିଲା ।

ସେ ବଡ଼ ପୁଅ ନୁହନ୍ତି କି ଗୋଟାଏ ପୁଅ ନୁହନ୍ତି, ତଥାପି ତୁମର ଜାତକ ଅନୁଶୀଳନ କେତେ ସୂକ୍ଷ୍ମ ଓ ଶାସ୍ତ୍ରୀୟ ଥିବ ହେଉନ ! ଜାତକ ଫଳ ବିଚାର ପାଇଁ ତୁମେ ଲେଖିଯାଇଥିବା ତିନୋଟି ବହି ସଂପୂର୍ଣ୍ଣ ଜ୍ୟୋତିଷ ଶିକ୍ଷା, ରାଶି ଓ ଗ୍ରହଚକ୍ର ଏବଂ ଜ୍ୟୋତିଷ ରତ୍ନ ପ୍ରକୃତରେ ଅମୂଲ୍ୟ ରତ୍ନ । ନବୀନ ଜ୍ୟୋତିଷୀଙ୍କ ପାଇଁ ଆଲୋକବର୍ତ୍ତିକା ।

ଜାତୀୟ ଜରୁରୀକାଳୀନ ପରିସ୍ଥିତିରେ ଅଣଗେଜେଟେଡ୍ କର୍ମଚାରୀଙ୍କ ସ୍ୱାର୍ଥ ଲାଗି ଲଢ଼ି ତୁମେ ସସ୍‌ପେଣ୍ଡ ହେବା ସମୟରେ 'ମାତୃଭୂମି'ର ସଂପାଦକ ସ୍ୱନାମଧନ୍ୟ ସଚ୍ଚିଦାନନ୍ଦ କର ତାଙ୍କର ସଂପର୍କୀୟ ଭ୍ରାତାଙ୍କ ଅପେକ୍ଷା ତୁମକୁ ଅଧିକ ସମ୍ମାନ ଦେଖାଇ ଥିଲେ । ଗୋପାଳପୁର ବନ୍ଦରର ଅଧିକାଂଶ ସାନ ଭାଇ ଭଳି ସ୍ନେହ କରୁଥିଲେ । କୃତ୍ତିବାସ, ରେଡ଼ବାବୁ, ଆପାରାଓ ମିସ୍ତ୍ରୀ, ପ୍ରକାଶକ ଭାସ୍କର ବାବୁ, ସୁମୁଦ୍ରକ ଅଭିମନ୍ୟୁ ପାତ୍ର, ସୁସଙ୍ଗଠକ ରଘୁନନ୍ଦନ, ତୁମ ସହଧର୍ମିଣୀ, ଭାଇ-ଭଉଣୀ, ଝିଅ ଜୋଇଁ, ନାତି ନାତୁଣୀ, ଭଣଜା ପୁତୁରା, ଛୟାନବେ ବର୍ଷୀୟା ଗର୍ଭଧାରିଣୀ ସମସ୍ତେ ଆଜି ଶୋକବିହ୍ୱଳ, ସମସ୍ତେ ତୁମକୁ ଝୁରୁଛନ୍ତି । ସାହିତ୍ୟିକ ବନ୍ଧୁଗଣ ସ୍ମରଣିକା ପ୍ରସ୍ତୁତିରେ ନିମଜ୍ଜିତ । ମାତ୍ର ତୁମେ ତୁମର ସ୍ମାରକୀ ଗଢ଼ି ସାରିଛ । ପରମ ଜ୍ୟୋତି ପ୍ରେକ୍ଷାଳୟ ଓ ନବରଙ୍ଗପୁର ସିନେମାହଲ୍‌ଠୁ ବଡ଼ ସ୍ମାରକ ସୌଧ ଆଉ କ'ଣ କଏ ଗଢ଼ି ପାରିବ ?

ଜ୍ଞାନଗୌରବର ସ୍ୱାଭିମାନନେଇ ବଡ଼ ଭାଇର ଭୂମିକା ନିଭାଇ ତୁମେ ଚାଲିଗଲ । ଅନ୍ତତଃ ସେ ପୁରରେ ଶାନ୍ତିରେ ବିଶ୍ରାମ ନିଅ; ଏପୁରର ସମସ୍ତଙ୍କ ପାଇଁ କର୍ମନିଷ୍ଠାର ଆଶୀର୍ବାଦ ଢ଼ାଳିଦିଅ !

ଅନନ୍ତ ନଗର, ବ୍ରହ୍ମପୁର
ତା ୧-୧୦-୯୮

ତୁମର ଶୁଭାଶିଷାକାଂକ୍ଷୀ
ସୂର୍ଯ୍ୟନାରାୟଣ ଦାସ

# ଉଦାସୀନ କଥାକାର ଉମେଶ ଚରଣ

।। ଏକ ।।

ସ୍ୱାଧୀନତା ଉତ୍ତର କାଳର ଓଡ଼ିଆ କଥା ସାହିତ୍ୟ ରାଜ୍ୟରେ ଉମେଶ ଚରଣ ପାତ୍ରୀ ଜଣେ ପ୍ରତିଭାବାନ୍ ଶିଳ୍ପୀ । କିନ୍ତୁ କ୍ଷୋଭର ବିଷୟ, ସୃଷ୍ଟିର ସୀମିତତା ହେତୁ ସମାଲୋଚନାର ଦୃଷ୍ଟି ବଳୟକୁ ସେ ଏଯାବତ୍ ଆସିପାରି ନାହାନ୍ତି । ଗଳ୍ପର ଭାବ ଓ ଗଠନକଳା ଦୃଷ୍ଟିରୁ ସାମ୍ପ୍ରତିକ ଓଡ଼ିଆ କ୍ଷୁଦ୍ରଗଳ୍ପ ଏକ ନୂଆ ପରମ୍ପରାର ସେତୁ ନିର୍ମାଣ କରିବାରେ ଅଧିକ ଧ୍ୟାନନିଷ୍ଠ ହେଲେ ମଧ୍ୟ ସମାଲୋଚନାର ସ୍ୱଳ୍ପତା, ସେ ସବୁର ଯଥାର୍ଥ କଳନା ଦିଗରେ ନିଶ୍ଚୟ ଅନ୍ତରାୟଭାବେ ଠିଆ ହୋଇଛି । ଚଉଠ ଶତାବ୍ଦୀରୁ ଅଧିକ କାଳ ଧରି ନିରବଚ୍ଛିନ୍ନ ଭାବେ ଗଳ୍ପ ଲେଖିଥିବା ବହୁ ବିଶିଷ୍ଟ ଗାଳ୍ପିକ ଏବେ ମଧ୍ୟ ଅନାଲୋଚିତ । ଏ ଦୃଷ୍ଟିରୁ ଉମେଶଚରଣ ପାତ୍ରୀ ଯେ ଆଲୋଚନାର ପରିସରକୁ ଆସିପାରି ନାହାନ୍ତି, ତାହା ସମାଲୋଚନାର ଉଦାସୀନତା ବ୍ୟତୀତ ଆଉ କ'ଣ ହୋଇପାରେ ?

ଉମେଶ ଚରଣ ଉତ୍ତର ଷାଠିଏର ଗଳ୍ପକାର । ଉଭୟ ଗଳ୍ପ ଓ ଉପନ୍ୟାସରେ ପରୀକ୍ଷା ପ୍ରୟାସୀ ଏବଂ ଶୁଭବିଶ୍ୱାସୀ କଥାଶିଳ୍ପୀର ହାତ ଅତ୍ୟନ୍ତ ସମୃଦ୍ଧ । ଗଳ୍ପକାର ଭାବରେ ଉମେଶ ଚରଣ ଓଡ଼ିଆ ସାହିତ୍ୟ ପୀଠରେ ଆବିର୍ଭାବ ଅପେକ୍ଷାକୃତ ବିଳମ୍ବରେ ଘଟିଥିଲେ ହେଁ ଅନୁଭୂତିର ପ୍ରଖରତା, ଅଧ୍ୟୟନର ଗଭୀରତା ଓ ଭାବପ୍ରକାଶନର ଆନ୍ତରିକତା ହେତୁ ଏଯାବତ୍ ପ୍ରକାଶିତ ତାଙ୍କର ଗଳ୍ପ/ଉପନ୍ୟାସ ସହୃଦୟ ପାଠକମାନଙ୍କ ଅକୁଣ୍ଠ ଶ୍ରଦ୍ଧା, ସମ୍ପ୍ରୀତି ଓ ମାନ୍ୟତା ଲାଭ କରିପାରିଛି ।

'ରଜନୀଗନ୍ଧାର ପ୍ରଶ୍ନ'-- ବର୍ତ୍ତମାନ ସୁଦ୍ଧା ତାଙ୍କର ଏକମାତ୍ର ପ୍ରକାଶିତ ଗଳ୍ପ ସଂକଳନ । ତଥାପି ଗଳ୍ପରଚନା ପ୍ରତି ତାଙ୍କର ଗଭୀର ଆନ୍ତରିକତା ଓ ବିଶ୍ୱସ୍ତତା ତାଙ୍କୁ ଏକ ବିଶିଷ୍ଟ ଗାଳ୍ପିକର ଗୌରବରେ

ଅଭିଷିକ୍ତ କରିଛି । ଗଳ୍ପ ସୃଷ୍ଟି ଏବେ ମଧ୍ୟ କଳାତ୍ମକ । ମାତ୍ର ଶିଳ୍ପ ରୂପଗତ ବିବିଧତା ହିଁ ଏହାକୁ ଚିହ୍ନଟ କରିଥାଏ । ସାମାଜିକ ସମସ୍ୟା, ପରିଦୃଶ୍ୟମାନ ଚରିତ୍ର କିମ୍ବା କୌଣସି ନିର୍ଦ୍ଦିଷ୍ଟ ଘଟଣାର ରୂପାୟନ—ଏ ସବୁର ଉପାଦେୟତା ନିର୍ଣ୍ଣୀତ ହେବାର ଅବକାଶ ଆଜି ଆଉ ନାହିଁ । ତଥାପି ଗାଳ୍ପିକ ଉମେଶ ଚରଣଙ୍କ ଗଳ୍ପ ସମୂହ ଯେ ଭାବୋତ୍ତୀର୍ଣ୍ଣ, 'ରଜନୀଗନ୍ଧାର ପ୍ରଶ୍ନ' ଗଳ୍ପଗ୍ରନ୍ଥ ସନ୍ନିବେଶିତ ଗଳ୍ପସମୂହ ଏହାର ଜ୍ୱଳନ୍ତ ଦୃଷ୍ଟାନ୍ତ ବହନ କରେ । ସାତଟି ଗଳ୍ପରେ ସଂକଳନଟି ସମୃଦ୍ଧ । ପ୍ରଥମ ଗଳ୍ପ 'ଜ୍ଞାନର ପ୍ରତିମା' । ଗାଳ୍ପିକ ଏଥିରେ ଜୀବନର ଅତଳ ରହସ୍ୟ ଓ ମଣିଷ ମନର ସଂଗୁପ୍ତ ଭାବବୋଧକୁ ଉଦ୍‌ଘାଟନ କରିଛନ୍ତି । **D. H. Laurence**ଙ୍କ ଭଳି ଗାଳ୍ପିକ ଏଥିରେ ଯୌବନର ମୁଗ୍ଧ ବନ୍ଦନା କରିଛନ୍ତି । ଗଳ୍ପର ଭାବବସ୍ତୁ ମଧ୍ୟଦେଇ ଗାଳ୍ପିକ କହିବାକୁ ଚାହିଁଛନ୍ତି ଯେ, ଜୀବନ ଓ ଚେତନା ପରି ଯୌନ ଓ ସୌନ୍ଦର୍ଯ୍ୟ ଅବିଚ୍ଛେଦ୍ୟ । ଯୌନ ହେଉଛି ସବୁକିଛିର ମୂଳ । ଏହାର ଫଳ ହେଉଛି ବୋଧ ଏବଂ ଫୁଲ ହେଉଛି ସୌନ୍ଦର୍ଯ୍ୟ । ମନୋଜ ସନ୍ତୋଷ ଅନ୍ତରଙ୍ଗ ବନ୍ଧୁ । ଏହି ଆନ୍ତରିକତା ନେଇ ମନୋଜ ଯାଏ ସନ୍ତୋଷ ଘରକୁ । ସେଠି ସାକ୍ଷାତ ହୁଏ ସନ୍ତୋଷର ଭଉଣୀ ଅଣିମା ସହ । ମନୋଜ ଓ ଅଣିମା ମଧ୍ୟରେ ସଂପର୍କ ନିବିଡ଼ ହୁଏ । ଏଇ ନିବିଡ଼ତା ମଧ୍ୟରେ ସେମାନେ ପରସ୍ପର ନିଜର ସ୍ଥିତିକୁ ଭୁଲି କୂଳ ଉଲ୍ଲଙ୍ଘନ କରି ଯାଇଛନ୍ତି । ପରିଣାମ ଏହା ହୁଏ ଯେ, ଅଣିମା ମନୋଜକୁ ବିବାହ ନକରି ହୁଏ ଅନ୍ୟ ପୁରୁଷ ସହ । ତଥାପି ସନ୍ତୋଷ ଓ ମନୋଜ ମଧ୍ୟରେ ଥିବା ଆନ୍ତରିକ ସଂପର୍କରେ ଭଙ୍ଗା ସୃଷ୍ଟି ହୁଏ । ନିଜର କୃତ କର୍ମ ପାଇଁ ବିବେକୀ ମନୋଜ ଅନୁତପ୍ତ ହୁଏ । ସନ୍ତୋଷ ଜୀବନର ଏଇ କୁତ୍ସିତ ବାସନାକୁ ଘୃଣା କରି ବିବାହ ବନ୍ଧନଠାରୁ ଦୂରେଇ ଯାଏ । ମନୋଜ ବିବାହ କରେ । ସମୟ-ଚକ୍ରରେ ଅଣିମାର ପୁଅ ସହ ମନୋଜର ଝିଅ ବିବାହ ବନ୍ଧନରେ ଆବଦ୍ଧ ହୁଅନ୍ତି । ଯୌନ ଏକ ଅଗ୍ନି । ଏହା ସର୍ବଦା ଉତ୍ତାପ ଓ ଜ୍ୟୋତି ପରିବହନ କରେ । ଯେତେବେଳେ ସେହି ଆଲୋକ ଶୁଦ୍ଧ ଦୀପ୍ତିରେ ପରିଣତ ହୋଇଯାଏ, ସେତେବେଳେ ସୌନ୍ଦର୍ଯ୍ୟ ଆତ୍ମ ପ୍ରକାଶ କରେ । ଯୌନର ରୂପାନ୍ତର ଘଟିଲେ ତାହା ହୁଏ ପ୍ରେମ । ତେଣୁ ଯୌନକୁ ଛାଡ଼ି ପ୍ରେମର ପରିକଳ୍ପନା ଅବାସ୍ତବ । ପ୍ରେମ ହିଁ ସୃଷ୍ଟି । ପ୍ରେମ ଲକ୍ଷ୍ୟ ନୁହେଁ; ଏକ ଗତି । ଏଣୁ ଯୌନକୁ ଧରି ସୌନ୍ଦର୍ଯ୍ୟ ଓ ସୌନ୍ଦର୍ଯ୍ୟକୁ ନେଇ ଜୀବନର ରହସ୍ୟ ଉପଲବ୍ଧି କରିଯାଏ । ସଂଶିତ ଗଳ୍ପରେ ଯୌନ ଜୀବନର ଚିତ୍ର ରହିଛି

ସତ; ମାତ୍ର ତାହା ଯେତିକି ବାସ୍ତବଧର୍ମୀ ସେତିକି କଳାସମ୍ମତ । ଜୀବନର ସୂକ୍ଷ୍ମ ସତ୍ୟକୁ ପ୍ରକାଶ କରିବା ପାଇଁ ତେଣୁ ତାହା ଅଧିକ ସମର୍ଥ ।

ମଣିଷର ମନକୁ ବୁଝିବା ବଡ଼ କଠିନ ବ୍ୟାପାର । ଅନେକ ସମୟରେ ମଣିଷ ନିଜେ ବି ଜାଣେ ନାହିଁ ସେ କ'ଣ ଭାବୁଚି, କ'ଣ କରିବାକୁ ଯାଉଛି । ଅନେକ ଜଟିଳ ଆବେଗ ଓ ଅନୁଭୂତିରେ ଆଚ୍ଛନ୍ନ ତା'ର ଚେତନ ଓ ଅବଚେତନ ମନ । ଅନେକ ଆସକ୍ତି, ପ୍ରେମ, ଈର୍ଷା, ଅହଂକାର, ଭ୍ରାନ୍ତି ଓ ପଳାୟନକୁ ନିଜର ବ୍ୟକ୍ତି ସତ୍ତା ଭିତରେ ଧାରଣ କରି ସେ ଯେପରି ସନ୍ଦିଗ୍ଧ ଅସ୍ଥିର ହୋଇଉଠିଏ ! ଯେଉଁଠି ହୁଏତ ଅସାଧାରଣ ହେବାର କାମନା ନାହିଁ କିନ୍ତୁ ସାଧାରଣ ହୋଇଯିବା ପାଇଁ କୁଣ୍ଠା ଅଛି, ପାପ କରିବାକୁ ସାହସ ନାହିଁ, କିନ୍ତୁ ମନର ଅଭ୍ୟନ୍ତରରେ ନିଷିଦ୍ଧ ସ୍ୱପ୍ନମାନଙ୍କର ରୋମନ୍ଥନ ପାଇଁ ଆଗ୍ରହ ଅଛି । ମଣିଷର ଏମିତି ଏକ ରୂପ ଆବିଷ୍କାର କରାଯାଏ ଗଳ୍ପ 'ଛନ୍ଦହରା କବିତା'ରେ ·····। ଜେମ୍ସ ଓ ଷ୍ଟିଫ କୌଣସି ଏକ ପାସିଞ୍ଜର ରେଳ ଗାଡ଼ିର ଡ୍ରାଇଭର । ଦୁର୍ଘଟଣାଚକ୍ରରେ ଉଭୟେ ପାଣିବୁହା ରେଳ ଡବା ନେଇ ପହଞ୍ଚନ୍ତି ଏକ ଛୋଟିଆ ଷ୍ଟେସନରେ । ସେଠି ପାଣି ପାଇଁ ଅପେକ୍ଷା କରିଥିବା ଗୋଟାଏ ସୁନ୍ଦରୀ ତରୁଣୀ ଉପରେ ଜେମ୍ସର ଦୃଷ୍ଟି ଆକୃଷ୍ଟ ହୁଏ । ମନରେ ଜାତ ହୁଏ ଦୁର୍ବଳତା । ଲଜ୍ଜାଶୀଳା ତରୁଣୀଟି ତରଳ ଯୌବନର ଶିହରଣରେ ଅଥୟ ହୁଏ । ହେଲେ ଜେମ୍ସ ବନ୍ଧୁ ଷ୍ଟିଫ୍‌ଙ୍କ ପରାମର୍ଶକ୍ରମେ କନ୍ୟା ପିତାଙ୍କ ସହ ସାକ୍ଷାତ ଓ ଆଲୋଚନା ପାଇଁ ଅଗ୍ରସର ହୁଏ । କିନ୍ତୁ ରେଳ ଦୁର୍ଘଟଣାର ଶିକାର ହୋଇ ସେ ହୋଇଯାଏ ବିକୃତ । ତଥାପି ସେହି ସୁନ୍ଦରୀକୁ ପାଇବାର ତୀବ୍ର ବାସନା ତା' ମନରୁ ଅନ୍ତ ହୋଇ ନଥିଲା । ଦୁର୍ଘଟଣା ଯନ୍ତ୍ରଣାରୁ ମୁକ୍ତି ପାଇ ଜେମ୍ସ ଆସେ ଷ୍ଟେସନରେ ପ୍ରତିଦିନ ଅପେକ୍ଷା କରିଥିବା ସେହି ସୁନ୍ଦରୀ ତରୁଣୀ ପାଖକୁ···। ମାତ୍ର ନିଜର ବିକୃତ ଚେହେରା ଓ ପଙ୍ଗୁତ୍ୱ ସେମାନଙ୍କ ପୂର୍ବ ପରିଚୟରେ ପ୍ରାଚୀର ହୋଇଯାଏ । ଆଉ ହରିଣୀ ପରି ଦୌଡ଼ି ପଳାଏ ତରୁଣୀଟି ତା'ର ବହୁ ପ୍ରତୀକ୍ଷମାଣ ପ୍ରିୟ ଜେମ୍ସଙ୍କୁ ଚିହ୍ନି ନ ପାରି···। ପ୍ରେମର ଏକ ରୋମାଣ୍ଟିକ ଭାବସ୍ପର୍ଶ ଗଳ୍ପଟିକୁ ହୃଦୟଗ୍ରାହୀ କରିଛି । ଗଳ୍ପଟିରେ ପ୍ରେମ ଅବଶ୍ୟ ଉଚ୍ଛୃଙ୍ଖଳ ନୁହେଁ; ସଂଯତ । ଜେମ୍ସ ଓ ତରୁଣୀର ମାନସିକ ଭାବାବେଗ ଓ ପ୍ରୀତି କାରୁଣ୍ୟକୁ ଲେଖକ ଜୀବନ୍ତଭାବରେ ବର୍ଣ୍ଣନା କରିଛନ୍ତି । ଏକ ସଫଳ କରୁଣ ରସମୟ ପ୍ରେମ ଗଳ୍ପ ଭାବେ ଏହା ପଟାନ୍ତରହୀନ ।

ରାଜନୀତି ଆଧୁନିକ ସମାଜ ଜୀବନର ମୁଖ୍ୟ ନିୟାମକ । ରାଜନୀତିକୁ ବାଦ୍ ଦେଇ ଆଜିର ବ୍ୟକ୍ତି ଜୀବନକୁ ମଧ୍ୟ ସ୍ୱତନ୍ତ୍ର ଭାବରେ ବିଚାର କରାଯାଇ ନପାରେ । ଆଜିର ସମାଜ ଜୀବନ ସହିତ ଏହା ଘନିଷ୍ଠ ଭାବେ ଜଡ଼ିତ । କିନ୍ତୁ ସାହିତ୍ୟରେ ରାଜନୈତିକ ଚର୍ଯ୍ୟା ଯେଉଁଠି ପ୍ରକୃତ ଆଭିମୁଖ୍ୟ ଗ୍ରହଣ କରେ, ସେଉଁଠି ସାହିତ୍ୟିକ ନିଜର Identity ହରାଇ କୌଣସି ନିର୍ଦ୍ଦିଷ୍ଟ ରାଜନୈତିକ ଦଳ ବା ନେତୃତ୍ୱରେ ଅନ୍ଧ ସ୍ତାବକତା କରି ବସେ, ସେଠି ସାହିତ୍ୟ ହୁଏ ସ୍ୱୟଂ ପ୍ରତାରିତ । କଳାତ୍ମକ ମୂଲ୍ୟବୋଧର ସେଠି ମୃତ୍ୟୁ ଘଟେ । ସେଥିପାଇଁ ସଚେତନ ସାହିତ୍ୟିକମାନେ ପ୍ରତ୍ୟେକ ଘଟଣାକୁ ଗଭୀର ଭାବେ ଅନୁଧ୍ୟାନ କରି ମାନବିକ ଭାବ ସତ୍ୟ ସହିତ ସାମାଜିକ ଭାବ ବୋଧର ସ୍ୱରୂପକୁ ଉଦ୍‌ଘାଟନ କରି ସେଥିରେ ରାଷ୍ଟ୍ରିକ ମୂଲ୍ୟବୋଧର ବୈଶିଷ୍ଟ୍ୟକୁ ସ୍ୱୀକାର କରି, ରାଜନୀତିକ ଭାବଚେତନା ଭିତ୍ତିକ ସାହିତ୍ୟ ସୃଷ୍ଟିରେ ମନୋନିବେଶ କରିଥାଏ । ଗାଳ୍ପିକ ଉମେଶ ଚରଣଙ୍କ 'ପିଚୁ ରାସ୍ତା' ରାଜନୀତିକ ଭାବ ଭୂମିରେ ଚରିତାଶୀଭୂତ । ସ୍ୱାଧୀନତା ପରବର୍ତ୍ତୀ ରାଜନୀତିକ, ସାମାଜିକ, ସାଂସ୍କୃତିକ, ପ୍ରଶାସନିକ ଦୁର୍ନୀତି ଓ ଦୁର୍ଗତିର ଚିତ୍ର ଏଥିରେ ସଫଳଭାବେ ରୂପାୟିତ ହୋଇଛି । ବଂଶୀଧର ସ୍ୱାଇଁ ଜଣେ ନିଷ୍ଠାବାନ୍ ସ୍ୱାଧୀନତା ସଂଗ୍ରାମୀ । ଗାନ୍ଧିଜିଙ୍କ ନୀତି, ଆଦର୍ଶକୁ ଅନୁସରଣ କରି ସେ ବ୍ରିଟିଶ ସରକାରଙ୍କଠାରୁ ମାଡ଼ ଖାଇଥିଲେ । ଜେଲ୍ ଯାଇଥିଲେ । ଜେଲ୍‌ରେ ତାଙ୍କ ନାଁ ପଚାରିଲା ବେଳେ ସେ କହିଥିଲେ – ତାଙ୍କ ନାଁ 'ଭାରତ' । ବାପଙ୍କ ନାଁ ପଚାରିଲା ବେଳେ କହିଥିଲେ—'ଏମ. କେ. ଗାନ୍ଧୀ' । ଦେଶ ପାଇଁ ନିଜର ଜମିବାଡ଼ି ସବୁକିଛି ତ୍ୟାଗ କରିଦେଇଥିଲେ ବଂଶୀଧର ବାବୁ । ଦେଶ ସ୍ୱାଧୀନ ହେଲା, ଜାତିର ପିତା ଏ ଦେଶବାସୀଙ୍କ ହାତରେ ସ୍ୱାଧୀନ ଭାରତକୁ ଅର୍ପଣ କରି ଦେଇ ଚାଲିଗଲେ । ହେଲେ ଗାନ୍ଧୀଙ୍କ ନୀତି ଆଦର୍ଶକୁ ଭୁଲିଯାଇ ଏ ଦେଶର ନେତାମାନେ କଳୁଷିତ ରାଜନୀତିରେ ଲିପ୍ତ ରହିଲେ । କ୍ଷମତା ଲାଳସା, ଅର୍ଥ ସର୍ବସ୍ୱରେ ପରିଣତ ହେଲା । ଦେଶ ପାଇଁ ଅମାନୁଷିକ ପ୍ରହାର ଖାଇଥିବା ବଂଶୀଧର ଦୁଃଖ, ଦାରିଦ୍ର୍ୟତା ମଧ୍ୟରେ କାଳାତିପାତ କଲାବେଳେ ସ୍ୱାଧୀନ ଭାରତର ମନ୍ତ୍ରୀମାନେ ସୁଖ ସମ୍ଭୋଗ ଓ କ୍ଷମତାଶାଳୀ ହୋଇ ଉଠିଲେ ।

ସ୍ୱାଧୀନତା ପରବର୍ତ୍ତୀ ସମାଜର ଦାରୁଣ ଦୃଶ୍ୟରେ ଗାଳ୍ପିକ ଉମେଶ ଚରଣ ବ୍ୟଥିତ ହୋଇ ପଡ଼ିଛନ୍ତି । ସେ ଲକ୍ଷ୍ୟ କରିଛନ୍ତି ସ୍ୱାଧୀନତା

ଆନ୍ଦୋଳନର ବଡ଼ ବାଣ୍ଡରେ ଯେଉଁମାନେ ଦିନେ ନିଜର ଜୀବନ ଓ ଯୌବନକୁ ତିଳ ତିଳ କରି ଉତ୍ସର୍ଗ କରି ସଫଳ ହୋଇଥିଲେ, ସ୍ୱାଧୀନତା ପ୍ରାପ୍ତିର ପରବର୍ତ୍ତୀ କାଳରେ ସେମାନେ ସମାଜରେ ଅବହେଳିତ ଓ ଅପାଂକ୍ତେୟ ହୋଇ ଯାଇଛନ୍ତି । ସୁବ୍ରତ ବସୁଙ୍କ ଭଳି ବାରମ୍ବାର ଦଳବଦଳ-କାରୀ ନେତା ସ୍ୱାଧୀନତା ଆନ୍ଦୋଳନର ଦ୍ୱାରଦେଶ ସ୍ପର୍ଶ କରି ନଥିଲେ ହେଁ ସ୍ୱାଧୀନତା ପରେ ସକ୍ଷମ ରାଜନୀତିରେ ଗାଦିସୀନ ହୋଇଛନ୍ତି । ସମାଜରେ ଭ୍ରଷ୍ଟାଚାର ସୃଷ୍ଟି କରିବାରେ ସେମାନେ ମୂଳସୂତ୍ର ହୋଇଥିଲେ ମଧ୍ୟ ନିଜ କୂଟକପଟତାରେ ନିପୁଣତା ଯୋଗୁଁ ବେଶ୍ ଭଦ୍ର ଲୋକ ସାଜି ବିଜୟୀ ହୋଇଛନ୍ତି ।

ପ୍ରକୃତରେ ସ୍ୱାଧୀନତା ପରବର୍ତ୍ତୀ କାଳରେ ଆମର ରାଜନୈତିକ ଜୀବନର ଦ୍ରୁତ ପରିବର୍ତ୍ତନ ଘଟିଛି । ରାଜନୀତି ଆଜି ପ୍ରବଞ୍ଚନା ଓ ପ୍ରତାରଣାରେ ପରିଣତ ହୋଇଛି, ଏଥିରେ କୌଣସି ନିର୍ଦ୍ଦିଷ୍ଟ ଆଦର୍ଶ କିମ୍ବା ଆଭିମୁଖ୍ୟ ନାହିଁ । ଯେଉଁ ଆଶା ଆକାଂକ୍ଷା ଏବଂ ଆଦର୍ଶକୁ ନେଇ ଭାରତ ବର୍ଷ ସେଦିନ ପରାଧୀନତାର ନିଗଡ଼ରୁ ମୁକ୍ତିଲାଭ କରିଥିଲା ଠିକ୍ ସ୍ୱାଧୀନତା ପରବର୍ତ୍ତୀ କାଳରେ ସେଇ ଆଦର୍ଶ ଓ ବାସ୍ତବ ଅବବୋଧ ବିଡ଼ମ୍ବିତ ହୋଇଛି । ସୁସ୍ଥ ରାଜନୈତିକ ଆଦର୍ଶବୋଧର ଦିଗନ୍ତ ସ୍ୱାଧୀନତା ପରେ ଅନ୍ଧକାରମୟ ତମିସ୍ରାରେ ପରିଣତ ହୋଇଯାଇଛି । ଏଥିରେ ନୂଆ ସମାଜ ଓ ନୂଆ ଜୀବନର ମୁକୁଳିତ ସ୍ୱପ୍ନ ସହିତ ରାଜନୈତିକ ଆଦର୍ଶର ବାସ୍ତବୀକରଣ କ୍ଷେତ୍ରରେ ଯେଉଁ ବ୍ୟର୍ଥତା ରୂପାୟିତ, କଥାକାର ଉମେଶ ଚରଣଙ୍କ 'ପିତୃଶ୍ରାଦ୍ଧ' ଗଳ୍ପରେ ତାହା ଲକ୍ଷଣୀୟ । ରାଜନୈତିକ ବାୟୁମଣ୍ଡଳର ଚିତ୍ର ଉପସ୍ଥାପିତ ହେବା ସାଥେ ସାଥେ କଳାତ୍ମକ ଉତ୍ସର୍ଗ ଗନ୍ଧ ଭାବମୂର୍ତ୍ତି ଏଥିରେ ସୁରକ୍ଷିତ ହୋଇଛି ।

ଚତୁର୍ଥ ଗଳ୍ପଟି 'ପ୍ରଥମ ଓ ତୃତୀୟ ପୁରୁଷ' । ଖାଣ୍ଟିରେ ଏହା ଏକ ବ୍ୟତିକ୍ରମ । ସୁଦୂର ସ୍ମୃତିର ଏକ ସଞ୍ଚରଣରେ ଏହାର ପ୍ରତିଷ୍ଠା । ପ୍ରେମାଞ୍ଚ ଅପେକ୍ଷା ବେଦନାବୋଧ ଏହାର ସାର୍ଥକତାର ଫଳଶ୍ରୁତି । 'ସୁନନ୍ଦ'—ଗଳ୍ପର ସକଳ ପୃଷ୍ଠାରେ ଯାହାର ନାମକୁ ଉଚ୍ଚାରଣ କରାଯାଇଛି ପ୍ରଶଂସାର ଆବେଗରେ, ଅସ୍ତୋଦ୍ଦନର ରକ୍ତ ଛଟାରେ, ଜ୍ୟୋସ୍ନାର ପ୍ରାଣସ୍ପର୍ଶୀ ଶୀତଳ ଆଲିଙ୍ଗନରେ ଓ ନିର୍ମମ ସତ୍ୟରେ, ସେ ଏକ କାଳଜୟୀ ସାମାଜିକ ନାରୀ । ସେ ତା'ର ନିଜସ୍ୱ ପୃଥିବୀର ଏକ କକ୍ଷଚ୍ୟୁତ ଉପଗ୍ରହ, ନିଜର ସୃଷ୍ଟି ସମ୍ପର୍କରେ

ଅଶେଷ ସମ୍ଭାବନା ସୃଷ୍ଟି କରିବାରେ ସମର୍ଥ ହୋଇ ପାରିଛି । ସେ ଏକ ସ୍ୱପ୍ନ ଭଳିତ ନକ୍ଷତ୍ର ଯିଏ ତାହାର କକ୍ଷରେ ଲକ୍ଷ୍ୟହୀନ ଭାବରେ ଘୂରି ବୁଲିବାକୁ ଏକାଧିକ ଗ୍ରହ ଉପଗ୍ରହକୁ ଅବକାଶ ଦେଇଛି— ଜ୍ଞାତସାରରେ ବା ଅବଚେତନ ମାନସରେ ସେ ଏକ ରକ୍ତ କାଙ୍କ୍ଷୀ ପ୍ରୀତିମୟୀ ତରୁଣୀ । ସେ ନିର୍ଭୀକ ଭାବେ ତା' ସ୍ୱାମୀକୁ କହିପାରେ—"ମୁଁ ତୁମର ସ୍ତ୍ରୀ ବୋଲି କଣ ମୋ ବାପାଙ୍କର ଝିଅ ନୁହେଁ ? ବିବାହ କଲି ବୋଲି ଜଗତର ଆଚାର, ବ୍ୟବହାର ଓ ଅଧିକାର କ'ଣ ସବୁ ଚୂଲିରେ ଯୋଡି ଦେବି ? × × ଯଦି ତୁମେ ଅଠରଶ ଶତାବ୍ଦୀର ପତ୍ନୀ ଖୋଜୁଥିଲ ମୋତେ ବାହା ହେଉଥିଲ କାହିଁକି ? କ'ଣ ବାପାଙ୍କ ଧନ ଓ କାର୍ ଲୋଭରେ । କାହିଁ ହେଲେ ତ ମୋ ମତାମତ ପଚାରିନା ବିବାହ ପୂର୍ବରୁ ! ତା ବାହାରେ ମୁଁ ମୋର ଶିକ୍ଷାଦୀକ୍ଷାକୁ ଚୂଲିରେ ଜାଳି ପରଦା ଭିତରେ ନାରୀ ଭଳି ଚଳିପାରିବିନି । ତୁମ ଇଚ୍ଛା ।"

ବଞ୍ଚିବାର ଚିରନ୍ତନ ରହସ୍ୟ ଏ ଗଳ୍ପରେ ଅଭିନବ ରୂପ ପ୍ରକଟିତ । ନାରୀ ଚରିତ୍ର ମଧ୍ୟରେ ଆଧୁନିକ ସମାଜର ଅନ୍ତର୍ନିହିତ ନାରୀ—ସତ୍ତାକୁ ଗାଳ୍ପିକ ଉକ୍ତ ଗଳ୍ପରେ ଉଦଘାଟନ କରିବା ସଙ୍ଗେ ସଙ୍ଗେ ସେହି ଉଦ୍‌ଘାଟିତ ନାରୀ ସତ୍ତା ମଧ୍ୟ ଦେଇ ଆଧୁନିକ ସମାଜର ସଂଘର୍ଷ ଓ ବ୍ୟକ୍ତି ଜୀବନର ଖଣ୍ଡିତ ବ୍ୟକ୍ତି-ସତ୍ତାକୁ ରୂପ ଦେଇଛନ୍ତି । ବାସ୍ତବିକ ଗଳ୍ପଟି ଉଗ୍ର ସଭ୍ୟତାର ଉଦବୋଧନ ନୁହେଁ, ଭଗ୍ନ ସ୍ୱପ୍ନ, ଯୌବନର ବିଭ୍ରାନ୍ତି, ବିସ୍ଫୋରଣ ଓ ବିକୃତିର ଏହା ଏକ ସାଙ୍କେତିକ ଛବିଚିତ୍ର । ସଂଘର୍ଷ କୁଟିଳ ସାମ୍ପ୍ରତିକ କାଳର ଏହା ଏକ ଅସହାୟ ଆର୍ତ୍ତନାଦ । ଜ୍ୟାଁ-ପଲ୍-ସାର୍ତ୍ତଙ୍କର 'Troubled Sleep'ର ଛାୟା ଏଥିରେ ଲକ୍ଷ୍ୟ କରାଯାଏ ।

ଉମେଶଚରଣଙ୍କ ସଫଳ ଗଳ୍ପମାନଙ୍କରେ ଏକ ବାସ୍ତବବାଦୀ, ଦୃଷ୍ଟିଭଙ୍ଗୀ ସ୍ପଷ୍ଟ । ସାମ୍ପ୍ରତିକ ସମାଜରେ ଘଟିଯାଉଥିବା ଦୁର୍ନୀତି, ବ୍ୟଭିଚାର, ଶୋଷଣ, ଧନିକ ଶ୍ରେଣୀର ଭଣ୍ଡାମୀ, ମଧ୍ୟବିତ୍ତର, ଦୋଦୁଲ୍ୟମାନତା ଓ ଦଳିତ ଶ୍ରେଣୀର ଭ୍ରାନ୍ତି ଓ ସ୍ୱପ୍ନକୁ ଉମେଶଚରଣ ସାବଲୀଳ ଭାବରେ ରୂପଦେବା ପାଇଁ ଚେଷ୍ଟା କରିଛନ୍ତି 'ରଜନୀଗନ୍ଧାର ପ୍ରଶ୍ନ' ଗଳ୍ପରେ । ଏକ ଗଭୀର ସମ୍ବେଦନା ନେଇ ସମାଜର ଦଳିତ ଦରିଦ୍ରମାନଙ୍କ କଥା ସେ କହିଛନ୍ତି । ସର୍ବହରାର ଦୁଃଖ ଓ ନିଷ୍ପେଷଣକୁ ରୂପ ଦେବାକୁ ଯାଇ ଲେଖନୀ ତାଙ୍କର ଶାଣିତ ହୋଇ ଉଠିଛି । ହରେଙ୍ଗିପଡ଼ା ଗ୍ରାମରେ ବର୍ଷ ବର୍ଷ ଧରି କେନାଲ

ମାତ୍ର କୂପ ଓ ଖୋଳାଇ କାମ ଚାଲିଥିଲେ ମଧ୍ୟ ପାଣି ଆସେନା । ସୁରେଶ ସେଠି ଇଂଜିନିୟର୍ । ତା'ର ତତ୍ତ୍ୱାବଧାନରେ କାମ ଚାଲିଛି । ସେଠି ନିଗମ ଓ ନିଷ୍ଟପଟ ଗରିବ ଚାଷୀ ସରକାରଙ୍କ କଥା ମାନି କେନାଲ ଖୋଳିବା ପାଇଁ ଜମି ଛାଡ଼ିଲେ । ମାତ୍ର ବାଘ ପଧାନର ଜିଦ୍ 'ଆଗ ଟଙ୍କା ଦିଅ—ତା' ପରେ ଜମି ଛାଡ଼ିବି ।' ବାଘ ପଧାନ ଭୟରେ କେନାଲ ଖୋଳା ବନ୍ଦ ହୁଏ । ଗାଁ ପଞ୍ଚୁଆତି ଏଥିପାଇଁ ତାକୁ ଏକଘରିଆ କରି ଦିଅନ୍ତି । ତଥାପି ବାଘର ଖାତିର ନାହିଁ । ସେ କଷ୍ଟ ପଡ଼ି ପରିବାର ଚଳାଏ । ନିୟତିର ନିଷ୍ଠୁର ଇଙ୍ଗିତରେ ସର୍ପାଘାତରେ ତା'ର ମୃତ୍ୟୁ ହୁଏ । ସୁରେଶର ତତ୍ତ୍ୱାବଧାନରେ ତା'ର ଶବ ସତ୍କାର ହୁଏ । ବାଘ ପଧାନ ପରିବାର ସହ ତାର ସମ୍ପର୍କ ବଢ଼େ । ବାଘ ପଧାନର ବିଧବା ସ୍ତ୍ରୀ ତା' ଜମିରେ କେନାଲ ଖୋଳିବାକୁ ସମ୍ମତି ଦିଏ । ଖୋଳା କାର୍ଯ୍ୟ ପୁଣି ଚାଲେ । ମାତ୍ର ତା'ର ଝିଅ ଏହାର ପ୍ରତିବାଦ କରେ । ତା'ର ପ୍ରତିବାଦକୁ ମନ୍ତ୍ରୀ, ପୋଲିସ୍ ଅଫିସର, ଗାଁ ଟାଉଟର କେହି ସାମ୍ନା କରିପାରି ନାହାନ୍ତି । ପରିଶେଷରେ ବିଜୟ ଘଟିଛି ସେହି ବାଘପଧାନ ଝିଅର ଏବଂ ସମଗ୍ର ଗାଁ ବାସୀଙ୍କର । ବସ୍ତୁତଃ ଏହା ହିଁ ଗଳ୍ପର ମୁଖ୍ୟ ଭାବବସ୍ତୁ । ଏହା ଏକ ସାମାଜିକ ବାସ୍ତବତା । ଗାଳ୍ପିକ ଏହି ସାମାଜିକ ବାସ୍ତବତାଟିକୁ କଳାତ୍ମକ ଭଙ୍ଗୀରେ ରୂପାନ୍ତରିତ କରିଛନ୍ତି । ଉକ୍ତ ଗଳ୍ପରେ ଶିଳ୍ପ ସାହିତ୍ୟ ପରିପ୍ରେକ୍ଷୀରେ ସାମାଜିକ ବାସ୍ତବତା କହିଲେ କେବଳ ସାମାଜକୁ ବୁଝାଏ ନାହିଁ, ସମାଜ ସହିତ ବୁଝାଏ ମଣିଷକୁ । ପ୍ରକୃତି ସହିତ ମଣିଷର ସଂଘର୍ଷ, ସାମାଜିକ ଉତ୍ପାଦନ ଓ ବିବର୍ତ୍ତନ ଭିତରେ ତା'ର ଚିନ୍ତା-ଚେତନାର ଉତ୍ତରଣ ବ୍ୟକ୍ତି ଓ ବ୍ୟଷ୍ଟିର ଦ୍ୱନ୍ଦ୍ୱ, ମଣିଷର ଦୁଃଖ, ନୈରାଶ୍ୟ, ଆନନ୍ଦ, ଆସକ୍ତି, ଭ୍ରାନ୍ତି, ଜାଗରଣ ଏବଂ ପରିବର୍ତ୍ତନ ପାଇଁ ତାର ଶେଷହୀନ ସଂଗ୍ରାମ, ସବୁକିଛି ଏ ବାସ୍ତବତାର ପରିସର ଭୁକ୍ତ । ସାହିତ୍ୟରେ ଅନୁଭୂତି, ଦୃଷ୍ଟିଭଙ୍ଗୀ ଆତ୍ମମୁଖ୍ୟ ଉପରେ ନିର୍ଭର କରି ଏହି ବାସ୍ତବତାର କଳାତ୍ମକ ପ୍ରତିଫଳନ ନିର୍ଦ୍ଦିଷ୍ଟ ଗତି ଓ ପ୍ରକୃତି ଲାଭ କରେ । ଓଡ଼ିଶାର ଅଧିକାଂଶ ଗାଳ୍ପିକ ଏପରି ଅଙ୍ଗୀକାରରେ ବୋଧହୁଏ ବିଶ୍ୱାସ ସ୍ଥାପନ କରନ୍ତି ନାହିଁ । କିନ୍ତୁ ଉମେଶଚରଣ ଜଣେ ସମାଜ ସଚେତନ ଶିଳ୍ପୀ ଥିବାରୁ ତାଙ୍କର ଏହି ସଚେତନତା ଭିତରେ ଏଇ ସାମାଜିକ ଅଙ୍ଗୀକାର-ବଦ୍ଧତା ସ୍ପଷ୍ଟ ପ୍ରମାଣିତ ହୋଇଯାଇଛି ।

ପ୍ରେମ ହିଁ ମଣିଷ ଜୀବନର ଶ୍ରେଷ୍ଠ ଅନୁଭୂତି । ଏହା ବ୍ୟତିରେକ ଯେତେ ସବୁ ପ୍ରାଣର ଦାହ ଓ ଜ୍ୱଳନ । ତେଣୁ ପ୍ରେମ ଯେଉଁଠି ଅସଫଳ, ଗଳ୍ପ ନାୟକ ସେଇଠି ଅସ୍ଥିର ହେବା ଆଦୌ ଅସ୍ୱାଭାବିକ ନୁହେଁ । କିନ୍ତୁ ଗଳ୍ପ ନାୟକ କେବଳ ଭଲ ପାଇବା ପାଇଁ ପ୍ରୟାସୀ ନୁହେଁ, ତଦ୍‌ଜନିତ ବିଫଳତା ପ୍ରତି ମଧ୍ୟ ସଚେତନ । ନୈରାଶ୍ୟର ଅନ୍ଧାରି ଜଗତରେ କୌଣସି ପ୍ରତିଶ୍ରୁତିର ସମ୍ଭାବନା ନଥିଲେ ମଧ୍ୟ ତା'ର ଖୋଜିବାର ଶେଷ ନାହିଁ, ପ୍ରତୀକ୍ଷାର ଅଂତ ନାହିଁ । ସମୟର ରେଖା ବାଲି ଉପରେ ତେଣୁ ସ୍ମୃତିର ନୂପୁର ସବୁବେଳେ ଶୁଭୁଥାଏ । ବିପର୍ଯ୍ୟସ୍ତ ବର୍ତ୍ତମାନକୁ ଅତୀତର ମଧୁର ସ୍ମୃତି ପ୍ରତି ନିୟତ ଆଖିଠାର ମାରୁଥାଏ । 'ସଂଯୋଗ' ଗଳ୍ପରେ ଏହି ପ୍ରେମ ଓ ପ୍ରତୀକ୍ଷାର ମୂଳକଥା ଉଲ୍ଲେଖ କରାଯାଇଛି । ବିଧୁଭୂଷଣ ସୁନନ୍ଦାକୁ ଭଲ ପାଉଥିଲେ । କିନ୍ତୁ ବିଧୁ ବାବୁଙ୍କ ବୋଉ ଚାହୁଁ ନଥିଲେ ସୁନନ୍ଦା ତାଙ୍କ ଘରକୁ ବୋହୂ ରୂପେ ପାଦ ଦେଉ । ସୁନନ୍ଦା ତଳ ଜାତିର ଝିଅ । ତେଣୁ ତାଙ୍କ ପୁଅର ବସ୍ତାରୁ ହଟିଯିବା ପାଇଁ ସେଦିନ ସତର୍କ କରାଇ ଦେଇଥିଲେ । ଦିନ ଗଡ଼ିଯାଏ । ସୁନନ୍ଦାର ବିବାହ ହୁଏ ସୌରଭ ସହ । ସୁଖରେ ଦିନ ଗୁଡ଼ାକ ବିତୁଥାଏ । କିନ୍ତୁ ସବୁଦିନ ପରି ଟୁର୍‌ରେ ଯାଇ ସୌରଭ ଆଉ ଫେରନ୍ତନି । ଆକ୍‌ସିଡେଣ୍ଟରେ ତାଙ୍କର ଆକସ୍ମିକ ମୃତ୍ୟୁ ହୁଏ । ସୁନନ୍ଦା ଶାଶୁଘରେ ପରିତ୍ୟକ୍ତ ଓ ଅବହେଳିତ ହୋଇଯାଏ । ତା' ସ୍ୱାମୀର ନ୍ୟାଯ୍ୟ ପ୍ରାପ୍ୟ ସରକାରଙ୍କଠାରୁ ପାଇବା କ୍ଷେତ୍ରରେ ମଧ୍ୟ ଶାଶୁଘରୁ ସହାୟତା ମିଳେନି । ନିରୁପାୟ ହୋଇ ଅଶ୍ରୁଭରା ଚିଠି ଲେଖେ ଏକମାତ୍ର ସହାୟ ବିଧୁ ବାବୁଙ୍କ ପାଖକୁ ଏବଂ ପହଞ୍ଚିଯାଏ ତାଙ୍କ ଘରେ ନିର୍ଦ୍ଧାରିତ ସମୟରେ । କିନ୍ତୁ ଆଶ୍ଚର୍ଯ୍ୟ କଥା ବିଧୁ ବାବୁଙ୍କ ବୋଉ ରେଳ ଷ୍ଟେସନରୁ ତାକୁ ପାଛୋଟି ନିଅନ୍ତି । ନିଜ କୃତକର୍ମ ପାଇଁ ସେ ଅନୁତପ୍ତ ହୁଅନ୍ତି । ସୁନନ୍ଦା ବିଧୁ ବୋଉଙ୍କ ସଙ୍ଗେ ତାଙ୍କ ଘରେ ପହଞ୍ଚେ । ତା' ପାଇଁ ବିଧୁବାବୁଙ୍କ ଜୀବନ ଅଧୁରା ରହି ଯାଇଥିବା ଶୁଣିବାକୁ ପାଏ । କିନ୍ତୁ ପରମୁହୂର୍ତ୍ତରେ ସେ ଏକ ଅପ୍ରତ୍ୟାଶିତ ଘଟଣାର ସମ୍ମୁଖୀନ ହୁଏ । ବିଧୁ ବୋଉ ଥାଳିରେ ଶଙ୍ଖା, ସିନ୍ଦୂର ଆଣି ତା' ଆଗରେ ଥୋଇ ଦେଇ କହିଲେ—'ଏତିକ ପିନ୍ଧି ନେ । ସଞ୍ଜକୁ ହଉଁ ଯିବା । ଏଣିକ ଏଇଟା ତୋ ଘର । ଆଜି ବୁଧବାର ଭଲ ଦିନ । ଶୁଣିଥିଲି, ସଇବି ଲୋକେ ଏଇବାରେ ବାହା ହୁଅନ୍ତି । × × ଏଇଟା ଯୋଗାଯୋଗ ନୁହେଁ—ସଂଯୋଗ ।'

ସମଗ୍ର ଗଳ୍ପ ମଧ୍ୟରେ ଗୋଟିଏ ସ୍ୱର ସ୍ୱତଃ ଲକ୍ଷ୍ୟ କରାଯାଏ, ତାହା ହେଉଛି ଗୋଟିଏ ଉପଲବ୍ଧିର ଓ ଅନ୍ୟଟି ଶୂନ୍ୟତାର ବା ଅପ୍ରାପ୍ତିର । ଗୋଟିଏ ପ୍ରେମର, କିନ୍ତୁ ଅନ୍ୟଟି ପ୍ରତୀକ୍ଷାର··· । ଗଳ୍ପନାୟକ ବିଧୂଭୂଷଣଙ୍କ ବିବୃତ ମାନସିକ ଚେତନା ଓ ସାମାଜିକ ସମସ୍ୟା ଗଳ୍ପଟିରୁ ଅବଧାରିତ ହୋଇଥାଏ । ଗାଳ୍ପିକ ଉମେଶଚରଣଙ୍କ ବ୍ୟକ୍ତିଗତ ସ୍ୱର ଓ ଅନୁଭୂତ ଅବୈୟକ୍ତିକ ଅଭିଜ୍ଞତାରେ ଏଠାରେ ରୂପାନ୍ତରିତ ହୋଇଯାଇଛି ।

ପତ୍ନୀତ୍ୱ କମ୍ବା ମାତୃତ୍ୱ ନାରୀ ଜୀବନର ଶେଷ କଥା ନୁହେଁ । ତା' ପାଇଁ ରହିଛି ଅନେକ ଉଜ୍ଜ୍ୱଳ ସମ୍ଭାବନା । ସମାଜର ଅର୍ଗଳ ତାକୁ ବାନ୍ଧି ରଖିପାରିବ ନାହିଁ । ସଙ୍କଳନର 'ଅମୃତଚମ୍ପା'ରେ ଏପରି ଆଶାବାଦର ସ୍ୱର ଶୁଣିବାକୁ ମିଳେ । ସାମୟିକ ଶାନ୍ତି ପାଇଁ ସପନା ନିଶାପାନ କରେ । କିନ୍ତୁ ଶେଷରେ ଏହା ଏକ ଅଶାନ୍ତିର ଧୂମବଳୟ ସୃଷ୍ଟି କରେ । ପାରିବାରିକ ଜୀବନ ବିପର୍ଯ୍ୟସ୍ତ ହୋଇଉଠେ । ସ୍ତ୍ରୀ ଚମ୍ପୀ ଏହାର ସମାଧାନ ସୂତ୍ର ବାହାର କରିପାରେନା । ସେ ମଧ୍ୟ ମଦ୍ୟପାନରେ ଅଭ୍ୟସ୍ତା ହୁଏ । ଦିନେ ସପନାର ଦୃଷ୍ଟି ପଡ଼େ ନିଶା ପିପାସୀ ଚମ୍ପୀ ଉପରେ । ନିଷ୍ଠୁର ମାଡ଼ ଖାଏ । କିନ୍ତୁ ପରମୁହୂର୍ତ୍ତରେ ଅନୁତାପରେ ସେ ଜର୍ଜରିତ ହୁଏ । ସାଢ଼ୁଆଣୀର ପରାମର୍ଶ କ୍ରମେ ଚମ୍ପୀ ନିଶା ବିରୋଧୀ ଅଭିଯାନର ନେତୃତ୍ୱ ନିଏ । ଫଳରେ ଗାଁ ପଞ୍ଚୁଆତି ବସିଲା । ନିଷ୍ପତ୍ତି ନେଲା, ଗାଁ ସରହଦ ଭିତରେ ମଦ ପିଇବା ମନା । ଅମାନ୍ୟରେ ପାଞ୍ଚଶହ ଟଙ୍କା ଜରିମାନା । ମାଇପି ପିଇଲେ ଲଣ୍ଡୀ ହେବେ । ପ୍ରବଳ ପ୍ରତିବାଦ ହେଲା । ସହରିଆ ଗୁଣ୍ଡାମାନେ ପ୍ରବଳ ହଟ୍ଟଗୋଳ କଲେ । ଗାଁବାସୀଙ୍କ ଆଗରେ ରହି ଏସବୁ ହଟ୍ଟଗୋଳର ସମ୍ମୁଖୀନ ହେଲା ସପନା । କିନ୍ତୁ ଗୁଣ୍ଡାମାନଙ୍କ ଆକ୍ରମଣରେ ସପନା ଟଳି ପଡ଼ିଲା ମଦଭଟି ଆଗରେ । ଠେଙ୍ଗା ପ୍ରହାର ତା' ଉପରେ ପଡ଼ିବା ପୂର୍ବରୁ ଚମ୍ପୀ ଜାବୁଡ଼ି ଧରିଥିଲା ତା'ର ଗିରସ୍ତକୁ । ଠେଙ୍ଗା ମାଡ଼ରେ ସେ ଅଚେତ ହୋଇ ପଡ଼ିଗଲା । ଏଇ ଘଟଣା ପରେ ସରକାର ବାଧ୍ୟ ହୋଇ ରାଜ୍ୟସାରା ମଦ ବିକ୍ରୀ ବନ୍ଦ କରିଛନ୍ତି । ଚମ୍ପାବତୀର ଏଇ ଆହ୍ୱାନ ସପନାକୁ ପୁରସ୍କୃତ କରିଛି । ନାରୀର ଏକ କ୍ରାନ୍ତିକାରୀ ରୂପ ଏଥିରେ ପ୍ରଦତ୍ତ । ନାରୀର ଶକ୍ତିମୟୀ ରୂପ ପୁରୁଷର ଔଦ୍ଧତ୍ୟକୁ ପ୍ରତିରୋଧ କରି ଏଠି ନୂତନ ଚେତନା ଜାଗ୍ରତ କରିଛି ।

॥ ଦୁଇ ॥

ପ୍ରତ୍ୟେକ ସ୍ରଷ୍ଟା ନିଜର ସ୍ୱକୀୟ ମହିମାରେ ମହିମାନ୍ୱିତ । ଆଜିର ଗଳ୍ପ ସାହିତ୍ୟରେ ଏକ ନିର୍ଦ୍ଦିଷ୍ଟ ବାଦ ଆଉ କ୍ଷମତା ଜାହିର୍ କରି ପାରୁନି । ଉଗ୍ର ବାସ୍ତବବୋଧରେ ଗଳ୍ପକାର ମନୀଷ ଭିତରେ ସୃଷ୍ଟ ଚିନ୍ତନଟିକୁ ବାହାରେ ପ୍ରକାଶ କରିବା ଲାଗି ବ୍ୟଗ୍ର ହୋଇ ଉଠୁଛି । ଉମେଶ ଚରଣ ଉପରୋକ୍ତ ସକଳ ଗଳ୍ପରେ ମଣିଷ ଜୀବନର ନିଭୃତ କୋଣର କଥାକୁ କୁହାଯାଇଛି । ଆଉ ମଧ୍ୟ କୁହାଯାଇଛି ତତ୍‌କାଳୀନ ପରିସ୍ଥିତିର କଥାକୁ । ତେବେ 'ରଜନୀଗନ୍ଧାର ପ୍ରଶ୍ନ' ପୁସ୍ତକରେ ସନ୍ନିବେଶିତ ସାତଟି ଯାକ ଗଳ୍ପର ମୁଖ୍ୟତଃ ଦୁଇ ପର୍ଯ୍ୟାୟଭୁକ୍ତ । ଗୋଟିଏ ଆବେଗଧର୍ମୀ ବା ରୋମାନ୍‌ସ ଧର୍ମୀ ଏବଂ ଅନ୍ୟଟି ବାସ୍ତବ ଜୀବନାନୁଭୂତି ଜନିତ ଚେତନା ଧର୍ମୀ ଗଳ୍ପ । ଏ ଦୁଇଟି ଧାରା ଗଳ୍ପ ଜଗତ ଭିତରେ ଦୁଇଟି ବ୍ୟକ୍ତି ଆତପାତ ହୁଅନ୍ତି । ଜଣେ ବ୍ୟକ୍ତିଗତ ଜୀବନର ସୁଖ, ଦୁଃଖ, ପ୍ରେମ ପ୍ରଣୟର ମୁକାବିଲା କରୁଥିବା ଉମେଶଚରଣ, ଆଉ ଜଣେ ତଳିଆ ନିସ୍ୱ ମଣିଷମାନଙ୍କର ଭଲ ମନ୍ଦର ସାମ୍ନା ସାମ୍ନି ହେଉଥିବା ଗାଳ୍ପିକ ଉମେଶଚରଣ । ଜୀବନର ପ୍ରତିମା, ଛନ୍ଦହରା କବିତା, ପ୍ରଥମ ଓ ତୃତୀୟ ପୁରୁଷ, ସଂଯୋଗ, ଅମୃତ ଚମ୍ପା— ଏ ଗୁଡ଼ିକ ପ୍ରାୟତଃ ଆବେଗଧର୍ମୀ । ଏଇ ଗଳ୍ପଗୁଡ଼ିକରେ ବ୍ୟକ୍ତି ଜୀବନରେ ଆସିଥିବା କେତେଗୁଡ଼ିଏ ସଜଳ ଆବେଗ ମୁହୂର୍ତ୍ତ ସବୁ ସୁଖ, ଦୁଃଖ, ଲୁହ, ମାନ-ଅଭିମାନ ଦେଇ ବାରି ହୋଇଯାଏ ନିହାତି ସ୍ପଷ୍ଟ ଭାବରେ । ଏସବୁ ଗଳ୍ପରେ ଫ୍ରଏଡଙ୍କର ଚେତନା ପ୍ରବାହ (Stream of Consciousness) ର ସ୍ପଷ୍ଟ ସ୍ଥାନ ରହିଛି । ଏଥିରେ ଯନ୍ତ୍ରଣା, ପ୍ରେମ, ପ୍ରଣୟ, ହତାଶାବୋଧ ସର୍ବୋପରି ଅବଚେତନ ମନରେ ଆନ୍ଦୋଳିତ ବିକ୍ଷିପ୍ତ ମୁହୂର୍ତ୍ତମାନ ଦୃଷ୍ଟିପଥାରୂଢ଼ ହୁଏ । ଏଥିରେ ଅସଫଳ ପ୍ରଣୟର ଅନ୍ତଃସ୍ୱର ଉଚ୍ଚାରିତ ହୋଇଛି । ଏଇସବୁ ଗଳ୍ପରେ ପ୍ରେମ କେଉଁଠି ନିଛିବଡ଼ି ଭଲ ବା କେଉଁଠି ଅସ୍ପଷ୍ଟ, ପୁଣି କେତେବେଳେ ଛନ୍ଦହୀନ କବିତା ପରି ଦୁର୍ବୋଧ୍ୟ । ପ୍ରଥମ ପର୍ଯ୍ୟାୟର ଗଳ୍ପଗୁଡ଼ିକ ମଧ୍ୟରେ ଯେଉଁ ଆବେଗ, ପ୍ରେମ ଲକ୍ଷ୍ୟ କରାଯାଏ ତାହା ମୁଖ୍ୟତଃ ଆତ୍ମକେନ୍ଦ୍ରିକ । ମୁଁ ରୂପରେ ଠିଆ ହୋଇଥିବା ଉମେଶଚରଣ ବ୍ୟକ୍ତିଗତ ଜୀବନର ମୁକାବିଲା କଲାଭଳି ମନେହୁଏ । ଅନେକ ସ୍ଥଳରେ ପ୍ରେମ କରି ହାରିଯିବା ଗ୍ଲାନିରେ ଛଟପଟ

ହୋଇଛନ୍ତି ଏବଂ ଗଳ୍ପକାର ଯେମିତି ଗୋଟାଏ କଥାକୁ ବାରମ୍ବାର (ମିଶାଣ, ଫେଡ଼ାଣ, ହରଣ, ଗୁଣନ) ଅଥବା ଭିନ୍ନ ରୂପରେ କହିଛନ୍ତି । ଅନେକ ଦାର୍ଶନିକ ତଥା ବୌଦ୍ଧିକ ଭାବଧାରାରେ ଗଳ୍ପଗୁଡ଼ିକ ଭାରାକ୍ରାନ୍ତ ହୋଇ ଥିଲେ ହେଁ ପାଠକକୁ ତାହା ଉତ୍ପୀଡ଼ିତ କରେ ନାହିଁ । ସାମଗ୍ରିକ ଭାବରେ କହିଲେ ଗଳ୍ପଗୁଡ଼ିକ ସେଇ ଫ୍ରଏଡ଼ୀୟ ଚେତନାର ବଶବର୍ତ୍ତୀ ଏବଂ ଆବେଗମୟ ଚିନ୍ତାରେ ଗର୍ଭସ୍ଥାନ ।

ଦ୍ୱିତୀୟ ପର୍ଯ୍ୟାୟର ଗଳ୍ପଗୁଡ଼ିକ ଗ୍ଲାନିରେ ଛଟପଟ ହେଉଥିବା ମଣିଷଙ୍କ ହାତରେ ଉତ୍ସର୍ଗୀକୃତ । ଠିକେ ଭଲରେ ବଞ୍ଚିବାର ପ୍ରବଳ କାମନା କରୁଥିବା ଅସହାୟ ମଣିଷଙ୍କ ନିର୍ଭୀକ ଇସ୍ତାହାର ହିଁ ଉମେଶଚରଣଙ୍କ ଗଳ୍ପର ପୃଷ୍ଠଭୂମି । ଏ ପର୍ଯ୍ୟାୟର ଗଳ୍ପମାନଙ୍କରେ ଗାଳ୍ପିକ ସରକାରଙ୍କ ଉଦାସୀନତା ପ୍ରତି ଅଙ୍ଗୁଳି ନିର୍ଦ୍ଦେଶ କରିବା ସଙ୍ଗେ ସଙ୍ଗେ ଅବହେଳିତ ମଣିଷମାନଙ୍କ ଦୁଃଖମୟ ଜୀବନଯାତ୍ରାକୁ ପାଠକମାନଙ୍କ ଦୃଷ୍ଟି ଆକର୍ଷଣ କରିବାରେ ସଫଳତା ଅର୍ଜନ କରିଛନ୍ତି । ଯେଉଁ ମେହନତି ମଣିଷଙ୍କର ଦୁଃଖ, ଯନ୍ତ୍ରଣା ସବୁ ଖୁନ୍ଦ ହୋଇଛି ବା ଗଳ୍ପକାର ଦର୍ଶେଇଛନ୍ତି, ତା' ଭିତରେ ସାମ୍ୟବାଦ ଖୋଜୁଥିବା ମଣିଷଟି ନିଜକୁ ଖୋଜି ଖୋଜି ପାଉନି ଯେମିତି··· । ସମାଜରେ ମୁଣ୍ଡଟେକି ଉଠୁଥିବା ସମସ୍ୟାମାନ ଯେଉଁ ଦିନ ସମାଧାନ ହେଉ ବା, ସମସ୍ୟା ସବୁକୁ ନଜରକୁ ଆଣିବାରେ ପ୍ରଚୁର କରିଛନ୍ତି ଗାଳ୍ପିକ । ଏଣୁ ବାସ୍ତବ ଚେତନାଧର୍ମୀ ସୃଜନଶୀଳତାରେ ଏ ପର୍ଯ୍ୟାୟର ଗଳ୍ପ ସବୁ ରସାଣିତ ।

॥ ତିନି ॥

ଗାଳ୍ପିକ ଉମେଶଚରଣଙ୍କ ରଚନାଶୈଳୀ ମଧ୍ୟରେ ଦୁଇଟି ବୈଶିଷ୍ଟ୍ୟ ଲକ୍ଷ୍ୟ କରାଯାଏ—ଗୋଟିଏ କାହାଣୀ ସଂଯୋଜନାରେ ଚମତ୍କାରିତା ଏବଂ ଅନ୍ୟଟି ନିଛକ ବୋଧଗମ୍ୟ ଶୈଳୀ । ଗାଳ୍ପିକ୍ ଉମେଶଚରଣ ତାଙ୍କ ଗଳ୍ପମାନଙ୍କରେ ବର୍ଣ୍ଣନା କରିଥିବା ଆବେଗ, ରୋମାନ୍ସ, ସମସ୍ୟା, ଜଂଜାଳ ଜୀବନର ସଫଳ, ଅସଫଳ ମୁହୂର୍ତ୍ତ ବେଶ୍ ସ୍ବଚ୍ଛନ୍ଦ୍ୟପୂର୍ଣ୍ଣ ଭଙ୍ଗୀରେ ଅବଶ୍ୟ କରିଛନ୍ତି । ପ୍ରତ୍ୟେକ ଗଳ୍ପରେ ଏକ ନିର୍ଦ୍ଦିଷ୍ଟ ଆବେଗ ରହିଛି । ଅଧିକାଂଶ ଗଳ୍ପରେ ଉତ୍କଣ୍ଠା ସଂରକ୍ଷିତ । ଭାଷା ଓ ବର୍ଣ୍ଣନାରେ ଅବଶ୍ୟ କେତେକ ସାମାନ୍ୟ ତ୍ରୁଟି ରହିଛି । ତେବେ ଅସହାୟ ମଣିଷର ମାନସିକ ସ୍ଥିତାବସ୍ଥାର ବର୍ଣ୍ଣନା ବାସ୍ତବସ୍ଥାର ହୋଇ ପାରିଛି ।

ଔପନ୍ୟାସିକ ଗୋପୀବାବୁଙ୍କର ପରି ନିଛକ ବର୍ଣ୍ଣନାରେ ଉମେଶଚରଣଙ୍କ ଗଳ୍ପ ରସାଣିତ । ଏତଦ୍ ବ୍ୟତୀତ ଚମତ୍କାର ଭାବଦୀପ୍ତ ପ୍ରୟୋଗ ମଧ୍ୟ ତାଙ୍କ ଗଳ୍ପରେ ପ୍ରାୟତଃ ଦେଖାଯାଏ । ସାମଗ୍ରିକ ଭାବେ କହିଲେ, ମଣିଷର ଆବଶ୍ୟକ କ୍ଷୁଧା, ଫ୍ରଏଡୀୟ ଦର୍ଶନ ଏ ଦୁଇଟି ଉମେଶଚରଣଙ୍କ ଗଳ୍ପର ପ୍ରାଣବିନ୍ଦୁ ।

ଗଳ୍ପର ଦୀର୍ଘତା ଉମେଶ ବାବୁଙ୍କ ଗଳ୍ପ ରଚନାର ଏକ ତ୍ରୁଟି । ଉପନ୍ୟାସ ସୁଲଭ ବର୍ଣ୍ଣନା ଗୁଡ଼ିକ ଗଳ୍ପର ପ୍ରାରମ୍ଭ ପର୍ଯ୍ୟାୟରେ ବିରକ୍ତି-ବୋଧ ଜାତ କରାଇଛି । ପୁନଶ୍ଚ Sex ବା ପ୍ରଣୟ କଥା କହିଲାବେଳେ ଗାଳ୍ପିକ ଅଧିକ ମାତ୍ରାରେ ଭାବ ପ୍ରବଣ ହେଲାଭଳି ମନେହୁଏ । ସ୍ଥାନେ ସ୍ଥାନେ ଗଳ୍ପଗୁଡ଼ିକ ବୌଦ୍ଧିକ ସନ୍ତ୍ରାସର ଗସ୍ତସ୍ଥାନ ହୋଇଯାଇଛି । ଉନ୍ନତ ଚିନ୍ତା-ଚେତନା ଭିତରେ ଏ ତ୍ରୁଟି ହୁଏତ ଗୌଣ ମନେହୁଏ, ତେବେ ସମଗ୍ର ଗଳ୍ପ ଜଗତର ନାୟକ ଉମେଶଚରଣ ଅନ୍ତରାଳରେ ହେଉ କିମ୍ବା ସାମ୍ନା ସାମ୍ନିରେ ହେଉ ନିଜକୁ ମୁକାବିଲା କରିଛନ୍ତି ସମାଜ ସହିତ । ସେହିପରି ମାନବୀୟ ପ୍ରବୃତ୍ତି ବିଶ୍ଳେଷଣ କ୍ଷେତ୍ରରେ ଉମେଶଚରଣ ଗୁରୁତ୍ୱ ଦେଇଛନ୍ତି । ମନୁଷ୍ୟ ପ୍ରକୃତି ବା ପ୍ରବୃତ୍ତିର ସୂକ୍ଷ୍ମତମ ଦିଗଟିକୁ ଉମେଶଚରଣ ଉଖାରି ନିଖାରି ବିଶ୍ଳେଷଣ କରିବାର ଦୁଃସାହସ କରିଛନ୍ତି । ପୁନଶ୍ଚ ଉମେଶ ଚରଣଙ୍କ ଭାବ ଚେତନାର ଅନ୍ୟର ବଳିଷ୍ଠ ଦିଗ ହେଉଛି ସମାଜ-ରାଜନୈତିକ ସଚେତନତା । ଦୁର୍ନୀତିର ହାତ କମିତ ଜୀବନରୁ ସ୍ୱାଦ ପୋଛି ନେଇଛି, ସାମାଜିକ ଓ ଅର୍ଥନୈତିକ ଦୁଃସ୍ଥିତିର ସୃଷ୍ଟି ପଛରେ ଦୁର୍ନୀତିର ଧୂସର ହାତ କିଭଳି ପ୍ରସାରିତ—ଗାଳ୍ପିକ ତାହା ମଧ୍ୟ ଶାଣିତ ଦୃଷ୍ଟିଭଙ୍ଗୀ ନେଇ ବର୍ଣ୍ଣନା କରିଛନ୍ତି ।

ତଥାପି ମୋପାସାଁଙ୍କ ଗଳ୍ପ ପରି ଉମେଶଚରଣଙ୍କ ଗଳ୍ପ ଯେ ସୁଖପାଠ୍ୟ ଓ ପାଠକର ସ୍ମୃତିପଟରେ ସାଇତି ରହିବା ପରି ଗୁଣରାଶିକ ବିଭବ ସମ୍ପନ୍ନ, ଏକଥା ନିର୍ବିବାଦରେ କୁହାଯାଇପାରେ । ହୁଏତ କହିବାର ଭଙ୍ଗୀରେ ସେ ନୂଆ ନୂଆ ପରୀକ୍ଷା କରିପାରିନଥିନ୍ତି ବା ଶୈଳୀରେ ବିପୁଳ ବିସ୍ମୟ ସୃଷ୍ଟି କରିପାରି ନଥାନ୍ତି, ତଥାପି ଉମେଶଚରଣଙ୍କ ଗଳ୍ପ-ଜଗତରେ ପ୍ରବେଶ କଲେ ସ୍ମୃତିରେ ରେଖାଙ୍କିତ ରହିଯାଏ, ବୋଧହୁଏ ସାର୍ଥକ ଗଳ୍ପର ଏହା ହିଁ ଏକ ସଫଳ ପରୀକ୍ଷା ।

**ସୁରେଶଚନ୍ଦ୍ର ପାଣିଗ୍ରାହୀ**
ତୁଳସୀ ନଗର, ବ୍ରହ୍ମପୁର-୧

# ଉମା ଭାଇନା ଚାଲିଗଲେ !

ତାଙ୍କୁ ସମସ୍ତେ ଡାକୁଥିଲେ ଉମା ଭାଇନା । ମୁଁ ମଧ୍ୟ ଡାକିବା ଆରମ୍ଭ କଲି । 'ବିନପୂ ବୁକ୍ ଷ୍ଟୋର' ଆଗରେ ସନ୍ଧ୍ୟାରେ ସାକ୍ଷାତ୍ ହୁଏ । ପ୍ରଥମେ ନମସ୍କାର କଲେ ସେ ମୁରୁକି ହସଟିଏ ଦେଇ ଆଶୀର୍ବାଦ ଦେବେ । ସେମିତି ହସି ହସି ଧୀରେ କହିବେ ନଖଟାକୁ ଟିକିଏ ତଳଆଡୁ କାଟିଦେଲେ କେମିତି ହୁଅନ୍ତା । ନର୍ଷ୍ଟ ଦେଖିବେ ଭଲ ଦିଶନ୍ତା । ମୁଁ ହଁ କରି ଦେଇ ଖସିକି ଚାଲିଯାଏ । ଶେଷରେ ପରିସ୍ଥିତି ଏମିତି ହେଲା ଯେ, ତାଙ୍କୁ ଡରି ମୋଟା ନଖ ରଖିବା ଛାଡିଦେଲି । ସେ ସରୁ ନଖ ରଖୁଥିଲେ ।

ତାଙ୍କ ପ୍ରତି ଭକ୍ତି, ସମ୍ମାନ, ଆପଣାପଣିଆରେ ଆମେ ପ୍ରାୟ ଓଦା ହୋଇଯାଉଥିଲୁ । ଏତେବଡ଼ ରୁଚିଶୀଳ ସ୍ରଷ୍ଟା, ବିନା ଓକିଲାତି ଡିଗ୍ରୀରେ ଓକିଲ, ଦକ୍ଷ ଇଞ୍ଜିନିୟର, ମିଷ୍ଟଭାଷୀ ଓ ମେଳାପୀ ହୋଇ ବି ତାଙ୍କର ଗର୍ବ ଟିକେ ନ ଥିଲା ।

ତାଙ୍କର ବକ୍ତବ୍ୟ ଯୁକ୍ତିଥିଲା ଅକାଟ୍ୟ ଶାଣିତ ଓ ସର୍ବଗ୍ରହଣଯୋଗ୍ୟ । ରାଜନୀତି ପ୍ରତି ସେ ବୀତସ୍ପୃହ ଥିଲେ । ତାଙ୍କର ଉପନ୍ୟାସ, ଗଳ୍ପ, ଗୀତିନାଟ୍ୟ, ପ୍ରବନ୍ଧ ଥିଲା ଅତି ଉଚ୍ଚକୋଟୀର ଓ ସଫଳ ମଧ୍ୟ ।

କବିତା ଛାଡ଼ି ଗପ ଲେଖିବା ପାଇଁ ମତେ ଯେଉଁ କେତେଜଣ ସାହିତ୍ୟିକ ପ୍ରୋତ୍ସାହିତ କରିଛନ୍ତି—ତା' ଭିତରେ ଅଛନ୍ତି 'ଉମା ଭାଇନା' ।

ଉମା ଭାଇନା ନାହାନ୍ତି ବୋଲି ଶୁଣିବାପରେ ମନଟା କେମିତି ନୀରସ ହୋଇଗଲା । ସ୍ରଷ୍ଟା ତ ଅମର—ତା ସୃଷ୍ଟି ସବୁବେଳେ ତା'କୁ ଜୀବନ୍ତ କରି ରଖିଥାଏ । ଉମା ଭାଇନା ଆମରି ଭିତରେ ଅଲବତ୍ ବଞ୍ଚିବେ !

**କିଶୋର ସାହୁ ଆକାଶ୍**

# ଉମେଶ ପାଢ଼ୀ—ଏକ ଝଲକ

ଆଜକୁ ପ୍ରାୟ ୨୦ ବର୍ଷ ତଳେ ତାଙ୍କ ସହିତ ମୋର ପ୍ରଥମ ଦେଖା । ସେତେବେଳେ ମୁଁ କଟକରେ ଚାକିରି କରୁଥାଏ । ରାଜ୍ୟ ବର୍ଣ୍ଣିକର ଇନସ୍‌ପେକ୍ଟର ସଙ୍ଘର ସାଧାରଣ ସମ୍ପାଦକ ରୂପେ ଦରମା ସମୀକରଣ କମିଶନରଙ୍କୁ ଗୋଟାଏ ମେମୋରେଣ୍ଡମ୍ ପ୍ରସ୍ତୁତ କରିବାକୁ ସେଠାକାର ବିଭିନ୍ନ କର୍ମଚାରୀ ସଂଘ କର୍ମକର୍ତ୍ତା ଓ ନେତାମାନଙ୍କୁ ପରାମର୍ଶ କରିବାରୁ ସମସ୍ତେ ଏକସ୍ୱରରେ ସୂଚନା ଦେଇଥିଲେ ଯେ, ତୁମ ବ୍ରହ୍ମପୁରର ଜଣେ ସୁଦକ୍ଷ ଲେଖକ ଶ୍ରୀ ଉମେଶ ପାଢ଼ୀ, ଯେ କି ଏହି ସମସ୍ୟାର ସମାଧାନ କରି ପାରିବେ । ତେଣୁ ବ୍ରହ୍ମପୁର ଆସି ପାଢ଼ୀବାବୁଙ୍କ ଅଫିସକୁ ଯାଇ ଦେଖିଲି ଯେ ସେ ଏକାଗ୍ର ଚିତ୍ତରେ କୌଣସି ଗୁରୁତର ନକ୍‌ସା ପ୍ରସ୍ତୁତ କରିବାରେ ବ୍ୟସ୍ତ ରହିଛନ୍ତି । ତାଙ୍କର ସହକର୍ମୀମାନଙ୍କ ଠାରୁ ଜଣାଗଲା ଯେ ସେ ହେଉଚନ୍ତି ଜଣେ ଦକ୍ଷ ଓ ନୀତିବାନ ମଣିଷ, ଯେ କି କୌଣସି ଚାପ ଆଗରେ ମୁଣ୍ଡ ନୁଆଁଇ ନାହାନ୍ତି ।

ସେଦିନ ପାଢ଼ୀ ବାବୁଙ୍କ ସହିତ ଅଳ୍ପ ସମୟ କଥାବାର୍ତ୍ତାରୁ ଜଣାଗଲା ଯେ, ପଦୋନ୍ନତି ଆଦେଶନାମାରେ ତାଙ୍କର ନାମଟିକୁ ଅଶୁଦ୍ଧ ବନାନ କରାଯାଇଥିବାରୁ, ସେ ପ୍ରତିବାଦ ସ୍ୱରୂପ ନିଜ ପଦୋନ୍ନତିକୁ ଅଗ୍ରାହ୍ୟ କରି ଉକ୍ତ ଆଦେଶନାମାରେ ତାଙ୍କର ନାମକୁ ସଂଶୋଧନ କରି ପଠାଇବାକୁ ସେ ସରକାରଙ୍କୁ ଫେରାଇ ଦେଇଛନ୍ତି । ଏଥିରୁ ସ୍ପଷ୍ଟ ଅନୁମେୟ କରାଯାଇଅଛି ଯେ ସେ ଥିଲେ ଜଣେ ସ୍ୱାଭିମାନୀ ପୁରୁଷ ।

ଆମ କୋପରେଟିଭ କଲୋନି ନିକଟସ୍ଥ ତାଙ୍କର ଅଶୋକ ନଗର ବାସଭବନକୁ ଥରେ ମୋତେ ଡ଼ାକିନେଇ ତରୁଣ ବୟସରେ ସେ ଲେଖିଥିବା ଉପନ୍ୟାସଟିକୁ ପୁନଃ ମୁଦ୍ରଣ କରିବା ଅଭିଳାଷ ବ୍ୟକ୍ତ କରିଥିଲେ । ଏହା ପରେ ଫଲ୍‌ଗୁ ସାହିତ୍ୟ ଆସର, ଦୈନିକ ଆଶା ସାହିତ୍ୟ ଆସରରେ ତାଙ୍କର ସହିତ ଆନ୍ତରିକତା ବୃଦ୍ଧି ପାଇଲା । ଏଜବେସଟାସ ଗୁଣ୍ଡି କପର ସାଂପ୍ରତିକ

ଟି. ବି., କ୍ୟାନସର ବେମାରୀ ଉପୁଜାଏ, ତାଙ୍କର ସେହି ସନ୍ଦର୍ଭଟି ପଢ଼ି ଆଶ୍ଚର୍ଯ୍ୟାନ୍ୱିତ ହେଲି । ସେ ଏକାଧାରରେ ଥିଲେ ଜଣେ ଇଞ୍ଜିନିୟର, ସାହିତ୍ୟିକ, ବୈଜ୍ଞାନିକ, ଗବେଷକ ଓ ଜ୍ୟୋତିଷ । ଏଭଳି ବିଚକ୍ଷଣ ବ୍ୟକ୍ତିଟିଏ କିପରି ରାଜ୍ୟ ସରକାର ଅଧୀନରେ ଗୋଟିଏ ତଳିଆ ପଦବୀରେ ଘାର୍ଦ୍ଧନ ରହି ପାରିଥିଲେ, ଭାବିଲେ ତାହାହିଁ ଆଶ୍ଚର୍ଯ୍ୟ ଲାଗେ ।

ତାଙ୍କର ମତରେ ଘର ତିଆରି କଲାବେଳେ ସିଡ଼ି ପାହାଚ ନିର୍ମାଣ ନକ୍ସା ଅନୁଯାୟୀ ସେଣ୍ଟିଂ ବାନ୍ଧିବା ବହୁ ଇଞ୍ଜିନିୟର ଓ ଠିକାଦାର ମିସ୍ତ୍ରୀ ଜାଣନ୍ତି ନାହିଁ । ତେଣୁ ଅଧିକାଂଶ କ୍ଷେତ୍ରରେ ସିଡ଼ିର ତଳଭାଗ ଓସାରିଆ ହେଲାବେଳେ ଉପରଭାଗ ସରୁ ହୋଇଯାଏ । ଏହି ତ୍ରୁଟି ସୁଧାରିବାକୁ ମୋର ସିଡ଼ିଘର ନିର୍ମାଣ କଲାବେଳେ ସେ ସ୍ୱୟଂ ସେଠାରେ ଘଣ୍ଟା ଘଣ୍ଟା ଉପସ୍ଥିତ ରହି, ମିସ୍ତ୍ରୀକୁ ବୁଝାଇବା ସତ୍ତ୍ୱେ, ତଥାପି ତ୍ରୁଟି ରହିବାରୁ ମିସ୍ତ୍ରୀକୁ ତିନିଥର ସେଣ୍ଟ୍ରିଂ ଫାଲସ୍ ଭାଙ୍ଗିବାକୁ ପଡ଼ିଥିଲା । ଏଭଳି ଟିକିନିଖି ହିସାବ ରଖିବା ସାଧାରଣ କଥା ନୁହେଁ । ଏଯୁଗର ମଣିଷ ହୋଇ ସେ ତୋଷାମଦ ଓ ଭ୍ରଷ୍ଟାଚାରକୁ ଘୃଣା କରୁଥିଲେ ଏବଂ ପଦପଦବୀ ପଛରେ ଗୋଡ଼ାଉଥିବା ଶିକ୍ଷିତ ସମାଜକୁ ପସନ୍ଦ ନକରି 'କର୍ମଣ୍ୟେ ବାଧିକାରସ୍ତେ ମା ଫଳେଷୁ କଦାଚନ', ଗୀତା ବାଣୀ ପାଳନ କରି ମରଣଜୟୀ ହୋଇଗଲେ ।

ପ୍ରଥମ କୋପରେଟିଭ କଲୋନି
ବ୍ରହ୍ମପୁର-୪

ଶ୍ରୀ ରାଜେନ୍ଦ୍ର ମୋହନ ପାଲ

# ଜ୍ୟୋତିଷ ଆକାଶର ତାରକା
## ଉମା ଭାଇନା

ଆଜିକାଲିର ବିଜ୍ଞାନସମ୍ମତ ଗଣିତ-ଜ୍ୟୋତିଷ (**Astronomy**) ଶାସ୍ତ୍ର ପରି ଆଧ୍ୟାତ୍ମିକବାଦର ଫଳିତ ଜ୍ୟୋତିଷ (**Astrology**) ଶାସ୍ତ୍ରର ଗ୍ରହ, ଉପଗ୍ରହ, ନକ୍ଷତ୍ରମାନଙ୍କ ଗତି ସମାନ ଭାବେ ପରିଚିତ । ଫଳିତ ଜ୍ୟୋତିଷ ଶାସ୍ତ୍ରର ନିୟମ ଓ ଗଣିତ-ଜ୍ୟୋତିଷ ଶାସ୍ତ୍ରର ବୈଜ୍ଞାନିକ ସୂତ୍ର ସମାନ୍ତରାଳରେ ସିଦ୍ଧିଲାଭ କରିଛି । ଉମା ଭାଇନାଙ୍କ ମତରେ "ଖ୍ରୀଷ୍ଟପୂର୍ବ ନବମ ଶତାବ୍ଦୀରୁ ଜ୍ୟୋତିଷ ଶାସ୍ତ୍ର ଉପରେ ମଣିଷ ଭରସା ଓ ବିଶ୍ୱାସ କରି ଆସିଛି । ଏହି ଶାସ୍ତ୍ର ହିନ୍ଦୁଧର୍ମର ପ୍ରାଚୀନତମ ଗ୍ରନ୍ଥ ଓ ବେଦାନୁମୋଦିତ । × × × ଅପର ପକ୍ଷେ, ଫଳିତ ଜ୍ୟୋତିଷ ଶାସ୍ତ୍ର ହିଁ ଗଣିତ-ଜ୍ୟୋତିଷ ବା ଖଗୋଳ ଶାସ୍ତ୍ରର ଆତ୍ମାଭାବେ ଦଣ୍ଡାୟମାନ । ପ୍ରକୃତିର ପରିବର୍ତ୍ତନ ଓ ବିବର୍ତ୍ତନକୁ କେବଳ ଏହି ଫଳିତ ଜ୍ୟୋତିଷ ଶାସ୍ତ୍ର ହିଁ ସଠିକ୍ ଭାବେ ସୂଚନା ଦେଇ ଆସିଛି ।

ଏହି ନିୟମାନୁମୋଦିତ ଧାରାରେ ଆମ ଦେଶରେ ଶାସ୍ତ୍ରଜ୍ଞମାନେ ଇଂରାଜୀ, ହିନ୍ଦି, ସଂସ୍କୃତ, ତେଲୁଗୁ, ବଙ୍ଗଳା, ଉର୍ଦ୍ଦୁ ଭାଷାରେ ବିଭିନ୍ନ ଜ୍ୟୋତିଷ ବହି ଲେଖି ସାରିଛନ୍ତି । ଏପରି ଓଡ଼ିଆ ଭାଷାରେ ମଧ୍ୟ ଆମ ଓଡ଼ିଶାର ଜ୍ୟୋତିର୍ବିଦ୍ ଓ ଜ୍ୟୋତିଷ ଶାସ୍ତ୍ରବିତ୍ ବିଜ୍ଞ ପଣ୍ଡିତମାନେ ଫଳିତ ଜ୍ୟୋତିଷ ଉପରେ ଅନେକ ବହି ପ୍ରଣୟନ କରିଛନ୍ତି । କିନ୍ତୁ ଦେଖିବାକୁ ଗଲେ ନୂତନ ଭାବେ ସହଜରେ ଜ୍ୟୋତିଷ ଜ୍ଞାନ ଉପାର୍ଜନ କରିବା ଭଳି ବହି ଖଣ୍ଡିଏ ଓଡ଼ିଆ ଭାଷାରେ ଲେଖିବା ପାଇଁ ଉମା ଭାଇନାଙ୍କୁ ପ୍ରେରଣା ଦେଇଥିଲେ, ସଂପ୍ରତି ବ୍ରହ୍ମପୁର ବିଶ୍ୱବିଦ୍ୟାଳୟର ଓଡ଼ିଆ ବିଭାଗର ମୁଖ୍ୟ ଡ. ସୁଦର୍ଶନ ଆଚାର୍ଯ୍ୟଙ୍କ ସ୍ୱର୍ଗୀୟ ପିତୃଦେବ, ପଣ୍ଡିତ ବ୍ୟାକରଣ ତୀର୍ଥ ଉଭୟ ଭାଷାପ୍ରବୀଣ, ଯଜ୍ଞ ଓ କର୍ମ କର୍ମାଣି ବିଶାରଦ, ଜ୍ୟୋତିଷାଚାର୍ଯ୍ୟ ସ୍ୱର୍ଗତ ଯତିରାଜ ଆଚାର୍ଯ୍ୟ, ଯିଏକି ତାଙ୍କର ପୂଜ୍ୟପାଦ ମଉସା ।

ସେହି ପ୍ରେରଣା ବଳରେ ସ୍ୱର୍ଗତ ଉମା ଭାଇନା ସ୍ୱ ପିତୃଦେବ ବ୍ରଜସୁନ୍ଦର ପାଢ଼ୀଙ୍କ ପବିତ୍ର ସ୍ମୃତି ଉଦ୍ଦେଶ୍ୟରେ ପ୍ରଥମ କରି ୧୯୭୮ ମସିହାରେ ସମ୍ପୂର୍ଣ୍ଣ ଜ୍ୟୋତିଷ ଶିକ୍ଷା ନାମକ ଏକ ଜ୍ୟୋତିଷ ବହି ପ୍ରଣୟନ କଲେ ଏବଂ ସେହି ବହିଟି ଡ଼. ସୂର୍ଯ୍ୟନାରାୟଣ ଦାସଙ୍କ ପରାମର୍ଶକ୍ରମେ, ଓଡ଼ିଶା ବୁକ୍ ଷ୍ଟୋରର ସ୍ୱତ୍ତ୍ୱାଧିକାରୀ ଶ୍ରୀ ଗୋବିନ୍ଦଚରଣ ପାତ୍ର ସେହି ବର୍ଷ ପ୍ରକାଶ କରିଥିଲେ । ଏହି ବହିଟିର ଆଦର ଏପରି ବଢ଼ିବାକୁ ଲାଗିଲା ଯେ, ଅନେକ ପାଠକ ଜଣେ ଜଣେ ଜ୍ୟୋତିଷୀଭାବେ ପରିଗଣିତ ହୋଇଗଲେ । ଏପରିକି ମୋ ଭଳି ଜଣେ ଅନଭିଜ୍ଞ ବ୍ୟକ୍ତି ମଧ୍ୟ ତାଙ୍କର ଆଶୀର୍ବାଦରୁ ଜ୍ୟୋତିଷ ସଂପର୍କରେ ସଂପୂର୍ଣ୍ଣ ଜ୍ଞାନ ଉପଲବ୍ଧି କରିପାରିଲି । ସେ ଏହି ବହିଟିରେ ଫଳିତ ଜ୍ୟୋତିଷ ଶାସ୍ତ୍ରକୁ ଅତ୍ୟନ୍ତ କ୍ଲୃପ୍ତଭାବେ ସହଜବୋଧ୍ୟ ଭାଷାରେ ଲେଖିଥିବାରୁ ଓଡ଼ିଶାବାସୀଙ୍କର ନିକଟରେ ଚିରଋଣୀ ହୋଇ ରହିଗଲେ । ସରଳ ଭାଷାରେ ଉଦାହରଣ ମାଧ୍ୟମରେ ଫଳିତ ଜ୍ୟୋତିଷର ପ୍ରାରମ୍ଭିକ ଧାରଣାଠାରୁ ଆରମ୍ଭ କରି ବିଶୁଦ୍ଧ ଜାତକ ପ୍ରସ୍ତୁତି, ଦଶାଫଳ ଗଣନା ଓ ଗ୍ରହ ବିଚାର, ଲଗ୍ନ ଓ ଦଶା ନିର୍ଣ୍ଣୟ, ନବାଂଶ ଓ ଭାବଚକ୍ର, ଶୁଭାଶୁଭ ଯୋଗ ଓ କାଳ ଶଲ୍ୟ, ଦଶା ଓ ଅନ୍ତର୍ଦ୍ଦଶାର କାଳ ନିର୍ଣ୍ଣୟ ଓ ଫଳାଫଳ ସମେତ ସୌର ମଣ୍ଡଳ ଏବଂ ଭୌଗୋଳିକ ସ୍ଥିତି ଆଦି ସମସ୍ତ ଜ୍ୟୋତିଷ ଜ୍ଞାନ ଅତି ପ୍ରାଞ୍ଜଳଭାବେ ପ୍ରଦାନ କରିବାରେ ପ୍ରୟାସ କରିଛନ୍ତି । ସେ ଏତେ ସରଳ ଓ ନିରାଡ଼ମ୍ବର ଥିଲେ ଯେ, ତାଙ୍କ କଲମଟିର ଶେଷରେ ଲେଖିଛନ୍ତି ଯେ—

"କୌଣସି ଗଣନାକାର ଏହି ବହିରେ ଥିବା କୌଣସି ତଥ୍ୟ, ଗଣନା ଓ ଲେଖକଙ୍କ ମତ ସହ ଏକମତ ହୋଇ ନ ପାରିଲେ ପତ୍ରାଳାପ କରି ଲେଖକଙ୍କ ତ୍ରୁଟି ସଂଶୋଧନ କରିବେ ବୋଲି ଅନୁରୋଧ ।"

ଏହି ବହିଟି ବହୁତ ଦିନୁ ସରିଯାଇଥିଲେ ମଧ୍ୟ ଦ୍ୱିତୀୟ ସଂସ୍କରଣ ପ୍ରକାଶ ପାଇବାରେ ବିଳମ୍ବ ଘଟିଥିଲା । ଏପରିକି ପ୍ରକାଶକ କିମ୍ବା ଲେଖକ ପାଖରେ ମଧ୍ୟ ଖଣ୍ଡିଏ ବହି ନଥିଲା । ଉମା ଭାଇନା ମୋତେ କହିଲେ "ରଘୁନନ୍ଦନ, ତୋର ପାଖରେ ଥିବା ବହିଟି ନେଲେ, ମୁଁ ସ୍ଥାନ ବିଶେଷରେ ତ୍ରୁଟି ସଂଶୋଧନ କରି ଦ୍ୱିତୀୟ ପ୍ରକାଶନ ପାଇଁ ବହିଟି କଟକ ପଠାଇବି ।" ମୋତେ ସେହି କଥାଗୁଡ଼ାକ ସତତ ବାରମ୍ବାର ମୋର ମନକୁ ଆସୁଛି, ମୁଁ

ପାଖରେ ବସି ବହିଟି ସଂଶୋଧନ କରାଇ ଓଡ଼ିଶା ବୁକ୍ ଷ୍ଟୋର ମାଲିକ ଶ୍ରୀ ଗୋବିନ୍ଦ ଦାସଙ୍କ ପାଖକୁ ପଠାଇବା ସଙ୍ଗେ ସେ ଅବିଳମ୍ବେ, ବହିଟିର ୧ମ ସଂସ୍କରଣ ଏକ ମାସ ମଧ୍ୟରେ ୧୯୮୭ ମସିହା ଅକ୍ଷୟ ତୃତୀୟା ଦିନ ପ୍ରକାଶ କରିଥିଲେ । ଏ ମଧ୍ୟରେ 'ସମ୍ପୂର୍ଣ୍ଣ ଜ୍ୟୋତିଷ ଶିକ୍ଷା'ର ପାଠକ ତଥା ଗ୍ରାହକଙ୍କ ଆଗ୍ରହ ବହୁଳ ଭାବେ ଆଦର ବଢିବା ଫଳରେ ଉମା ଭାଇନା ଅଭିଭୂତ ହୋଇ ୧୯୮୮ ମସିହାରେ, ସରଳ ଓଡ଼ିଆ ଭାଷାରେ ଓ ଅତି ସଂକ୍ଷେପରେ ଜ୍ୟୋତିଷ ଶାସ୍ତ୍ର ଶିକ୍ଷା ଦେବାଭଳି, ଗଣିତଜ୍ଞ ତଥା ଗ୍ରହ ବିପ୍ରଙ୍କ ପାଇଁ ଆବଶ୍ୟକୀୟ କର୍ମକର୍ମାଣି, ଯାତ୍ରା, ବିବାହ, ବ୍ରତ ନିମନ୍ତେ ଯୋଗ, ଲଗ୍ନ, କୋଷ୍ଠି ମେଳକ ଇତ୍ୟାଦି ସଠିକ ତଥ୍ୟ ସମ୍ବଳିତ "ରାଶି ଓ ଗ୍ରହ ଚିତ୍ର" ଏବଂ 'ଜ୍ୟୋତିଷ ରତ୍ନ' ନାମକ ଦୁଇଟି ଜ୍ୟୋତିଷ ବହି ଯଥାକ୍ରମେ ଓଡ଼ିଶା ବୁକ୍ ଷ୍ଟୋର ଏବଂ ବିଜୟ ବୁକ୍ ଷ୍ଟୋର, ବ୍ରହ୍ମପୁରର ସମାନ୍ତରାଳ ଭାବେ ପ୍ରକାଶ କରି ଜ୍ୟୋତିଷ ଆକାଶରେ ନିଜକୁ ଉଜ୍ଜ୍ୱଳ ତାରକା ରୂପେ ଯାବତ୍ ଚନ୍ଦ୍ରାର୍କେ ପ୍ରତିଷ୍ଠିତ କରିପାରିଲେ ।

ଉମା ଭାଇନାଙ୍କ ଦଶାଗ୍ରହ ଓ ଅନ୍ତର୍ଦଶା ଗ୍ରହଙ୍କ ସ୍ଥିତି ଅନୁସାରେ ଶୁଭାଶୁଭ ଫଳ ସୂଚନା 'ସମ୍ପୂର୍ଣ୍ଣ ଜ୍ୟୋତିଷ ଶିକ୍ଷା' ବହିର ଏକ ବିଶେଷତ୍ୱ । ଏହା ବ୍ୟତୀତ ଲଗ୍ନାଧିପ ଓ ଅଷ୍ଟମାଧିପ ଗ୍ରହ ପ୍ରଭାବ ତଥା କେନ୍ଦ୍ରାଧିପତି ଦୋଷ ବିଶ୍ଳେଷଣ ତାଙ୍କର ସ୍ୱକୀୟ ବିଚାରଧାରାର ପରିଚାୟକ । ସେହିପରି 'ରାଶି ଓ ଗ୍ରହଚିତ୍ର' ପୁସ୍ତକରେ ସମସପ୍ତକ ମେଳକ ସମ୍ବନ୍ଧୀୟ ସ୍ୱତନ୍ତ୍ର ଅନୁଶୀଳନ ନିତାନ୍ତ ତାତ୍ପର୍ଯ୍ୟପୂର୍ଣ୍ଣ ଅଟେ । ଜୈମିନୀ ସୂତ୍ର ଓ ଶ୍ରୀନିବାସ ଦୀପିକା ଗ୍ରନ୍ଥର ଆଧାରରେ ନିଜର ଅନୁଭୂତିକୁ ଟିକିନିଖି ପରଖି ଉମା ଭାଇନା ଯେଉଁ ସବୁ ଜ୍ୟୋତିଷିକ ତଥ୍ୟାବଳୀ ତାଙ୍କର ଏହି ତିନୋଟି ପୁସ୍ତକରେ ପରିବେଷଣ କରିଛନ୍ତି ତାହା କାଳକାଳକୁ ସମୁଜ୍ଜ୍ୱଳ ତାରକା ଭଳି ଝଟକୁଥିବ ।

ଓଁ ଜୟଗୁରୁ

**ରଘୁନନ୍ଦନ ପାଣିଗ୍ରାହୀ**
ସମ୍ପାଦକ, ଫଲ୍ଗୁ ସାହିତ୍ୟ ସଂସଦ,
ବ୍ରହ୍ମପୁର-୭୬୦୦୦୩ (ଗଞ୍ଜାମ)

## ଉମେଶବାବୁଙ୍କ ସହ ସଂପର୍କ ......

୧୯୭୭ ମସିହାରେ ପ୍ରଧାନମନ୍ତ୍ରୀ ସ୍ୱର୍ଗତ ଇନ୍ଦିରା ଗାନ୍ଧୀ ଭାରତରେ ଜରୁରୀକାଳୀନ ପରିସ୍ଥିତି ଜାରି କରିଥିଲେ । ସେ ସମୟରେ ମୁଁ ସ୍ୱାଧୀନ ପ୍ରେସର ପରିଚାଳକ ଭାବେ କାର୍ଯ୍ୟ ସଂପାଦନ କରୁଥିଲି । ଦିନେ ଉମେଶବାବୁ ବହି ଖଣ୍ଡେ ପ୍ରେସକୁ ଆଣିଲେ ଛାପିବା ପାଇଁ । ସେହି ବହିରେ ଏଠାକାର ବିଧାୟକ, ସାମ୍ବାଦିକ ଓ ବିଶିଷ୍ଟ ଜନସାଧାରଣଙ୍କ ମତାମତ ରହିଥିଲା । ବହିଟିର ବିଷୟବସ୍ତୁ ଥିଲା ଗଞ୍ଜାମ ଜିଲ୍ଲା ସ୍କୁଲ ସମୂହର ଇନସ୍‌ପେକ୍ଟର ମହୋଦୟଙ୍କ ଦୁର୍ନୀତି ଏବଂ ଶିକ୍ଷକ-ଶିକ୍ଷୟିତ୍ରୀମାନଙ୍କୁ ଅଯଥା ବଦଳି । ସେ ସମୟରେ ଉମେଶବାବୁ ଥିଲେ ଗଞ୍ଜାମ ଜିଲ୍ଲା ନନ୍‌ଗେଜେଟେଡ଼ ଆସୋସିଏସନର ସଭାପତି । ଇନ୍‌ସପେକ୍ଟରଙ୍କ ଅନ୍ୟାୟ ବିରୁଦ୍ଧରେ ଆନ୍ଦୋଳନାତ୍ମକ କାର୍ଯ୍ୟପନ୍ଥା ଗ୍ରହଣ କରିବା ପାଇଁ ଶିକ୍ଷକ-ଶିକ୍ଷୟିତ୍ରୀ ଏବଂ କର୍ମଚାରୀମାନଙ୍କୁ ଏକଜୁଟ କରି ସରକାରଙ୍କ ଉଚ୍ଚପଦସ୍ଥ ପଦାଧିକାରୀଙ୍କଠାରୁ ଆରମ୍ଭ କରି ଭାରତର ପୂର୍ବତନ ରାଷ୍ଟ୍ରପତି ସ୍ୱର୍ଗତ ଭି. ଭି. ଗିରିଙ୍କଠାକୁ ଇନ୍‌ସ୍ପେକ୍ଟରଙ୍କ ଅନ୍ୟାୟ, ଦୁର୍ନୀତି ଓ ଅସଙ୍ଗତି ବିରୁଦ୍ଧରେ ଅଭିଯୋଗ ପଠାଗଲା । ସେହି ସମୟରେ ଭାରତର ରାଷ୍ଟ୍ରପତିଙ୍କୁ ବ୍ରହ୍ମପୁରବାସୀଙ୍କ ତରଫରୁ ନାଗରିକ ସମ୍ବର୍ଦ୍ଧନା ଦିଆଯିବାର ଥିଲା । ରାଷ୍ଟ୍ରପତି ମହୋଦୟ ଅଭିଯୋଗ-ପତ୍ର ଓଡ଼ିଶା ସରକାରଙ୍କୁ ପଠାଇ ଏହାର ବିହିତ କାର୍ଯ୍ୟାନୁଷ୍ଠାନ ଗ୍ରହଣ

କରିବାକୁ ପତ୍ର ପ୍ରେରଣ କରିଥିଲେ । ସ୍କୁଲ ଇନ୍‌ସପେକ୍ଟରଙ୍କ ଅନ୍ୟାୟ, ଅମାନ୍ତ ଏବଂ ଦୁର୍ନୀତି ବିଷୟ ନେଇ ଓଡ଼ିଶାର ପୂର୍ବତନ ମୁଖ୍ୟମନ୍ତ୍ରୀ ସ୍ୱର୍ଗତ ବିନାୟକ ଆଚାର୍ଯ୍ୟ (ସେ ସମୟରେ ବିରୋଧୀଦଳ ନେତା) ଓ ସେ ସମୟର ଶିକ୍ଷାମନ୍ତ୍ରୀଙ୍କ ସହ ବିଧାନ ସଭାରେ ପ୍ରଶ୍ନମାନ ଉତ୍‌ଥାପନ କରିଥିଲେ ଏବଂ ସରକାର ବିନାୟକ ବାବୁଙ୍କ ପ୍ରଶ୍ନକୁ ବେଖାତିର କରି ସ୍ୱର୍ଗତ ଉମେଶ ବାବୁ ଏବଂ ତାଙ୍କ ସହକର୍ମୀଙ୍କୁ କାର୍ଯ୍ୟରୁ ନିଲମ୍ବନ କଲେ । ଦିନେ ପ୍ରେସରେ କାର୍ଯ୍ୟରତଥିବା ସମୟରେ ବ୍ରହ୍ମପୁର ଟାଉନ ଥାନାରୁ ଦୁଇଜଣ କନଷ୍ଟେବଲ ଆସି ବଡ଼ବାବୁ ଡାକୁଛନ୍ତି ଥାନାକୁ ଆସ ବୋଲି ଖବର ଦେଲେ । ମୋ ସହିତ ପ୍ରେସର କର୍ମଚାରୀମାନେ ଥାନାରେ ଉପସ୍ଥିତ ହେଲୁ । ସନ୍ଧ୍ୟା ୭ ଘଣ୍ଟା ଠାରୁ ରାତି ଏକ ଘଣ୍ଟା ପର୍ଯ୍ୟନ୍ତ ଥାନାରେ ଅଟକ ରହି ବଡ଼ବାବୁ (ଏସ୍.ପି.) ଶ୍ରୀ କୈଳାସଚନ୍ଦ୍ର ମହାପାତ୍ରଙ୍କ ସହ ଆଲୋଚନା କଲୁ । ଏସ୍. ପି. ସାହେବ କେତେଗୁଡ଼ିଏ ପ୍ରଶ୍ନ ପଚାରି ମୋଠାରୁ ଉତ୍ତର ସବୁ ଟିପି ନେଲେ । ଏସ. ପି. ସାହେବ କହିଲେ ମୋତେ ଖଣ୍ଡେ ଛାପା ବହି ଦେଇପାରିବକି ? ମୁଁ ସେହି ରାତି ଏକ ଘଣ୍ଟାରେ ଏସ୍ ପି. ସାହେବଙ୍କୁ ବହିଖଣ୍ଡେ ଦେଲି । ଏସ୍. ପି. ସାହେବ ଦୟାପରବଶ ହୋଇ ଆମ୍ଭମାନଙ୍କୁ ଥାନାରୁ ବିଦାୟ ଦେଲେ ।

ତା ପରଦିନ ସକାଳ ଛଅଘଣ୍ଟା ସମୟରେ ସ୍ୱର୍ଗତ ଉମେଶବାବୁଙ୍କ ଘରେ ପହଞ୍ଚି ରାତିରେ ଘଟିଥିବା ସବୁ ଘଟଣା କହି ସେଠାରୁ ଫେରିଲି ।

ଉମେଶ ବାବୁଙ୍କର ଉପନ୍ୟାସ ବହି ଛାପିବାର ସୁଯୋଗ ପାଇଥିଲି । ଔପନ୍ୟାସିକ ଭାବେ ସେ ସମସ୍ତଙ୍କଠାରେ ପରିଚିତ । ତାଙ୍କର ଲେଖାମାନ ସରଳ, ସୁବୋଧ ଏବଂ ପାଠକ ପାଠିକା ଅତି ଆଗ୍ରହରେ ପଢ଼ିବାକୁ ନେଇଥାଆନ୍ତି । ଜ୍ୟୋତିଷ ଶାସ୍ତ୍ରରେ ମଧ୍ୟ ତାଙ୍କର ଗଭୀର ପ୍ରବେଶ ଥିଲା । ତାଙ୍କ କେତେକ ବନ୍ଧୁ ମଧ୍ୟ ଜ୍ୟୋତିଷ ଶାସ୍ତ୍ର ନେଇ ଫଳାଫଳମାନ ପଚାରୁଥିଲେ ଏବଂ ସେ ତାର ସଠିକ୍ ଉତ୍ତର ଦେଉଥିଲେ । ସେ ଜଣେ ଇଞ୍ଜିନିୟର, ସାହିତ୍ୟିକ, ଜ୍ୟୋତିଷୀ ଏବଂ ବିଭିନ୍ନ ଅନୁଷ୍ଠାନର ଅବୈତନିକ ସଭାପତି ଭାବେ ରହି ଚଳଆ କର୍ମଚାରୀଙ୍କ ମାଲି ମକଦ୍ଦମରେ କୋର୍ଟରେ ହାଜର ହୋଇ ମକଦ୍ଦମାମାନ ଫଇସଲା କରୁଥିଲେ ।

ଏଇ ପନ୍ଦର ଦିନ ତଳେ ଉମେଶବାବୁଙ୍କ ସହ ବିଜୟ ବୁକ୍‌ଷ୍ଟୋର ଠାରେ କଥାଭାଷା ହୋଇଥିଲି । ହସି ହସି କହିଲେ ଅଭି ! କମିତି ଅଛ ? ପାରିବାରିକ ବିଷୟ ନେଇ କଥା ହେଲୁ । ତା ପରଦିନ ବୁଝିଲି ପ୍ରାତିବାବୁ

ସମ୍ବଲପୁର ଚାଲିଗଲେଣି । ମାତ୍ର ଭଗବାନଙ୍କ ନିର୍ଦ୍ଦେଶ ସେ ଆମ ଫଲ୍‌ଗୁ ସାହିତ୍ୟ ସଂସ୍ଥାର ସାହିତ୍ୟିକ ବନ୍ଧୁମାନଙ୍କୁ ଛାଡ଼ି ହଠାତ୍ ଚାଲିଯିବେ ବୋଲି କାହା ମନରେ ନଥିଲା । ଯେତେଥର ମିଶିଛୁ ମୋତେ ସାହିତ୍ୟର ବିଭିନ୍ନ ଶବ୍ଦମାନ ପଚାରୁଥିଲେ, ମୁଁ ତହିଁର ଉତ୍ତର ନଦେଇ ପରେ ଦେବ କହି ସେଠାରୁ ଫେରୁଥିଲି । ସେ ଜଣେ ପ୍ରତ୍ୟୁତ୍ପନ୍ନମତି ବ୍ୟକ୍ତି ତାଙ୍କର ଯୁକ୍ତିକୁ ଖଣ୍ଡନ କରିବା ମୋ ଶକ୍ତିର ବାହାରେ ।

ସେ ଜଣେ ମେଳାପୀ, ସଦା ପ୍ରଫୁଲ୍ଲ ଏବଂ ନିର୍ଭୀକ ଥିଲେ । ତାଙ୍କର ନିର୍ଭୀକତା ଯୋଗୁଁ ସେ କେବେହେଲେ ନତମସ୍ତକ ହେଉନଥିଲେ ।

ଭଗବାନଙ୍କଠାରେ ପ୍ରାର୍ଥନା ତାଙ୍କର ଅମର ଆତ୍ମା ଚିର ଶାନ୍ତିରେ ରହୁ ।

ସନ୍ତୋଷ ପ୍ରିଣ୍ଟର୍ସ, ପୁରୁଣା ବ୍ରହ୍ମପୁର
ବ୍ରହ୍ମପୁର-୯

**ଅଭିମନ୍ୟୁ ପାଢୀ**

# ଅଭୁଲା ସ୍ମୃତି

ଇଂଜିନିଅର ଉମେଶ ଚରଣ ପାତ୍ରୀ ଆଉ ନାହାନ୍ତି । ଗତ ୨୮-୯-୯୮ ତାରିଖ ଦିନ ସୁଦୂର ବୁର୍ଲାଠାରେ ନିଜ ପୁଅ ପାଖରେ ରହୁଥିବାବେଳେ ସବୁଦିନ ପାଇଁ ଆଖିବୁଜି ଦେଇଛନ୍ତି । ବିଶ୍ୱାସ କରି ହେଉନି ଏମିତି ଅପ୍ରତ୍ୟାଶିତ ଭାବେ ଚାଲିଯିବେ ବୋଲି । ସରକାରୀ ଚାକିରୀରୁ ସିନା ଅବସର ଗ୍ରହଣ କରିଥିଲେ, କିନ୍ତୁ ତାଙ୍କ କାର୍ଯ୍ୟ ପରିସର ଥିଲା ଅସରନ୍ତି । ଚାକିରୀ ଖଣ୍ଡିକ ତାଙ୍କପାଇଁ ଥିଲା ନିମିତ୍ତ ମାତ୍ର, ଏକ ଅବଲମ୍ବନ; କିନ୍ତୁ ଏକମାତ୍ର ସମ୍ବଳ ନଥିଲା । ସ୍ୱେଚ୍ଛାକୃତ ଭାବେ ଆଦରି ନେଇଥିଲେ ସାଧନା ଓ ସଂଘର୍ଷପୂର୍ଣ୍ଣ ଜୀବନ । ସେଥିପାଇଁ ଅନେକ ଉଠପଡ଼ର ଅସ ସମ୍ଭାଳିବାକୁ ହୋଇଛି, ଚାକିରୀରୁ ବାରମ୍ବାର ନିଲମ୍ବିତ ହୋଇଛନ୍ତି । ତଥାପି ଖାତିର୍ ନଥିଲା । ସବୁଠି ବିଜୟ, ପରାଜୟର ସ୍ୱାଦ ସେ କେବେ ଚାଖି ନାହାନ୍ତି । ପ୍ରତିଭା, ଏକନିଷ୍ଠ ସାଧନା ଏବଂ ଦୃଢ଼ ଆତ୍ମବିଶ୍ୱାସ ଏ ତିନୋଟି ଯେମିତି ତାଙ୍କଠାରେ ଏକୀଭୂତ ହୋଇ ରହିଥିଲା । ତେଣୁ ସେ ଯଦି ଆତ୍ମକୈନ୍ଦ୍ରିକ ହୋଇ ନିଜର ଚାକିରୀ, ପଦୋନ୍ନତି କଥା ଭାବିଥାନ୍ତେ ତେବେ ହୁଏତ ଅନେକଙ୍କୁ ସେମାନଙ୍କ ସୌଭାଗ୍ୟରୁ ବଂଚିତ ହେବାକୁ ପଡ଼ିଥାନ୍ତା ।

ଉମେଶବାବୁଙ୍କ କର୍ମମୟ ଜୀବନର ଆରମ୍ଭ ଜଣେ ଡିପ୍ଲୋମା ଇଂଜିନିୟର ଭାବେ । ଇଂଜିନିୟର ଚାକିରୀ ଓ ଶିକ୍ଷାଗତ ଯୋଗ୍ୟତା ଉପରେ ନିଜର ପରିସରକୁ ସୀମାବଦ୍ଧ ନରଖି ସେ ଚାହିଁଥିଲେ କର୍ମଜୀବୀମାନଙ୍କ ମଧ୍ୟରେ ରହିଥିବା ଅସାମଞ୍ଜସ୍ୟ ଦୂର କରିବା ଏବଂ ପ୍ରଶାସନ କ୍ଷେତ୍ରରେ ତଳିଆ କର୍ମଚାରୀମାନଙ୍କ ଉପରେ ଉପରିସ୍ଥମାନଙ୍କ ଦମନମୂଳକ ଶାସନର ଅବସାନ ଘଟାଇ ସମସ୍ତେ ଯେପରି ଉପଯୁକ୍ତ ନ୍ୟାୟ ପାଇବେ ସେଥିପାଇଁ ଜାଗ୍ରତ ପ୍ରହରୀ ଭାବେ କାର୍ଯ୍ୟ କରିବା । ଏହି ମନୋଭାବ ଯୋଗୁଁ ସେ ଖଟିଖିଆ ଶ୍ରମିକ ଠାରୁ ଆରମ୍ଭ କରି ନିର୍ଦ୍ଦିଷ୍ଟ ଆୟ ଗୋଷ୍ଠୀର କର୍ମଚାରୀ-ମାନଙ୍କ ମନରେ ସଚେତନତା ସୃଷ୍ଟି କରିଥିଲେ । ବ୍ରିଟିଶ୍ ଆଇନ ଭଳି

ପ୍ରଶାସନକୁ ସୁହାଇଲା ଭଳି ରହିଥିବା ଆଇନ୍‌ର ପରିବର୍ତ୍ତନ କରି ପ୍ରଶାସନିକ କ୍ଷେତ୍ରରେ ନ୍ୟାୟଗତ ସଂସ୍କାର ଆଣିବା ପାଇଁ ତାଙ୍କ ପ୍ରୟାସ ଜାରି ରଖିଥିଲେ । ଏଥିପାଇଁ ଆବଶ୍ୟକ ହେଲେ ତାଙ୍କ ବହୁମୁଖୀ ପ୍ରତିଭା ଓ ଜ୍ଞାନ ବଳରେ ଆଇନଗତ ସହାୟତା ଦେଇ ଆନ୍ଦୋଳନାତ୍ମକ କାର୍ଯ୍ୟକ୍ରମରେ ନେତୃତ୍ୱ ନେବାପାଇଁ ଅକୁଣ୍ଠିତ ଭାବେ ଅଣ୍ଟାଭିଡ଼ି ଅଗ୍ରସର ହେଉଥିଲେ । ତାଙ୍କର ଅକାଟ୍ୟ ଯୁକ୍ତି, ତାହା ଉପସ୍ଥାପନ କରିବା ଶୈଳୀ ଆଗରେ ପ୍ରଶାସନ ପରାଜୟ ସ୍ୱୀକାର କରିବାକୁ ବାଧ୍ୟ ହେଉଥିଲା ।

ରାଜ୍ୟର ତୃତୀୟ ଓ ଚତୁର୍ଥ ଶ୍ରେଣୀ କର୍ମଚାରୀମାନେ ଯେତେବେଳେ ବିଭିନ୍ନ ସମସ୍ୟା ଘେର ଭିତରେ ରହି ନିଜକୁ ଖୁବ୍ ଅସହାୟ ମନେ କରୁଥିଲେ ସେତିକିବେଳେ ଓଡ଼ିଶାର ଏକମାତ୍ର ସଂଗଠନ "ଓଡ଼ିଶା ରାଜ୍ୟ ଅଣଗେଜେଟେଡ୍ କର୍ମଚାରୀ ସମନ୍ୱୟ ସମିତି" ସକ୍ରିୟଭାବେ କାର୍ଯ୍ୟ କରୁଥିଲା । ଏହାକୁ ପରିପୁଷ୍ଟ କରି ଅଧିକ ସକ୍ରିୟ କରିବା ନିମନ୍ତେ ଉମେଶବାବୁ ଗଞ୍ଜାମ ଜିଲ୍ଲା ଏନ.ଜି.ଓ. ବ୍ରହ୍ମପୁର ମଣ୍ଡଳର ସଭାପତିଭାବେ ୧୯୭୧ରୁ ୧୯୭୪ ପର୍ଯ୍ୟନ୍ତ ଦାୟିତ୍ୱ ନିର୍ବାହ କରିଥିଲେ । ନିଜର ଅପୂର୍ବ ସାଂଗଠନିକ ଶକ୍ତି ବଳରେ ସେ ସମସ୍ତ କର୍ମଚାରୀଙ୍କୁ ମୁଗ୍ଧ, ଚକିତ କରିଦେଉଥିଲେ । କର୍ମଚାରୀମାନଙ୍କ ପ୍ରତି ହେଉଥିବା ଅନ୍ୟାୟ, ଅତ୍ୟାଚାର ବିରୁଦ୍ଧରେ ଲଢ଼େଇ କରି ରାଜ୍ୟର କର୍ମଚାରୀଙ୍କ ମନରେ ବିପୁଳ ଉତ୍ସାହ ସୃଷ୍ଟି କରିପାରିଥିଲେ । ଏହା ବାଦଦେଇ ତାଙ୍କୁ ଚଡ଼ ମୂଲ୍ୟ ଦେବାକୁ ହୋଇଛି । ବାରମ୍ବାର ଚାକିରିରୁ ନିଲମ୍ବିତ ହୋଇଛନ୍ତି । କିନ୍ତୁ ସେଥିପ୍ରତି ଭ୍ରୂକ୍ଷେପ ନକରି, ନିଜ ଭବିଷ୍ୟତର ନିରାପତ୍ତା ପ୍ରତି ଆଖି ବୁଜିଦେଇ 'ଲଢ଼େଇ କରିବା ହିଁ ମନୁଷ୍ୟର ଧର୍ମ' କହି ସମସ୍ତଙ୍କୁ ଉଦ୍‌ବୁଦ୍ଧ କରୁଥିଲେ । ଜର୍ଜ ଫର୍ଣ୍ଣାଣ୍ଡେଜ୍, ସ୍ୱର୍ଗତ ଭି. ଭି. ଗିରି, ସ୍ୱର୍ଗତ ବିନାୟକ ଆଚାର୍ଯ୍ୟ, ସ୍ୱର୍ଗତ ଦିବାକର ପଟ୍ଟନାୟକ ପ୍ରମୁଖ ନେତୃବର୍ଗଙ୍କ ସହ ପ୍ରତ୍ୟକ୍ଷ ସମ୍ପର୍କରେ ସେ ସଂଗ୍ରାମୀ ଜୀବନାଦର୍ଶର ସକଳ ପ୍ରେରଣା ଲାଭ କରୁଥିଲେ ।

ଉମେଶବାବୁଙ୍କ ଘଟଣା ବହୁଳ ଜୀବନର ଅନେକ ସ୍ମୃତି ଅନେକଙ୍କ ହୃଦୟରେ ସାଇତା ହୋଇ ରହିଥିବ । ଗୋପାଳପୁର ବନ୍ଦରର ଇଞ୍ଜିନିୟର ଭାବେ କାର୍ଯ୍ୟ କରୁଥିବାବେଳେ ଭାରତର ପ୍ରଖ୍ୟାତ ହୋଟେଲ ଶିଳ୍ପଗୋଷ୍ଠୀ ଓବେରାଇ ପରିଚାଳିତ ପାମ୍ ବିଚ୍ ହୋଟେଲ୍‌ରେ କାର୍ଯ୍ୟରତ କର୍ମଚାରୀମାନଙ୍କ ସ୍ୱାର୍ଥପାଇଁ ଯେଉଁ ଆନ୍ଦୋଳନ ସୃଷ୍ଟି ହୋଇଥିଲା ଉମେଶବାବୁ ତା'ର ନେତୃତ୍ୱ

ନେଇଥିଲେ । 'ଗୋପାଳପୁର ବନ୍ଦ' ଡ଼ାକରା ଦେଇ ସେମାନଙ୍କ ନ୍ୟାଯ୍ୟ ଦାବୀ ପ୍ରତି ସମସ୍ତଙ୍କ ଦୃଷ୍ଟି ଆକର୍ଷଣ କରିଥିଲେ । ସେତେବେଳକୁ ଜର୍ଜ ଫର୍ଣ୍ଣାଣ୍ଡେଜ୍ ସସ୍ତ୍ରୀକ ଗୋପାଳପୁରରେ ଅବସ୍ଥାନ କରୁଥାନ୍ତି । ଆପୋଷ ଆଲୋଚନାରେ ସମ୍ପୃକ୍ତ କର୍ତ୍ତୃପକ୍ଷ କର୍ମଚାରୀମାନଙ୍କ ଦାବୀ ମାନି ନେଲେ । ତେବେ ଠିକ ସେତିକିବେଳେ ଦେଶରେ ଜାରିହେଲା ଜରୁରୀକାଳୀନ ପରିସ୍ଥିତି । ବିରୋଧୀ ପକ୍ଷର ଶୀର୍ଷ ନେତାମାନଙ୍କୁ ଗିରଫ କରାଗଲା । ଜର୍ଜ ଫର୍ଣ୍ଣାଣ୍ଡେଜ୍‌ଙ୍କ ସେହି ଅବସ୍ଥା ଘଟିପାରେ, ସମସ୍ତେ ଆତଙ୍କିତ । ଉମେଶବାବୁ ଯୋଜନାବଦ୍ଧ ଭାବେ ତାଙ୍କୁ ଟ୍ରେନ୍ ଯୋଗେ ଛଦ୍ମବେଶରେ ଦିଲ୍ଲୀ ପଠାଇବାର ସମସ୍ତ ବ୍ୟବସ୍ଥା କଲେ । ଶ୍ରୀମତୀ ଫର୍ଣ୍ଣାଣ୍ଡେଜ୍ ଗଲେ ଦୁଇଦିନ ପରେ ।

ସେହିପରି ୧୯୭୦-୭୧ ବେଳକୁ ଗଞ୍ଜାମ-ଫୁଲବାଣୀ ଶିକ୍ଷା-ମଣ୍ଡଳରେ ସମ୍ପୃକ୍ତ କର୍ତ୍ତୃପକ୍ଷଙ୍କ ଖିଆଲ ମତିଯୋଗୁଁ କର୍ମଚାରୀମାନଙ୍କ ବ୍ୟାପକ ବଦଳି, ପଦୋନ୍ନତିରେ ସ୍ୱେଚ୍ଛାଚାରିତା ପ୍ରଭୃତି ବିଳକ୍ଷଣ ଦୃଷ୍ଟାନ୍ତ ଦେଖାଯାଇଥିଲା । କେଉଁ ସ୍କୁଲରେ ଆବଶ୍ୟକତା ଠାରୁ ଅଧିକ ଶିକ୍ଷକ ରହିଲେ ତ ଆଉ କେଉଁଠି ଯଥେଷ୍ଟ କମ୍ ଶିକ୍ଷକ ଶିକ୍ଷାଦାନ କାର୍ଯ୍ୟରେ ନିଯୁକ୍ତ ହେଲେ । ଏପରିକି ତେଲୁଗୁ ପଢ଼ାଉଥିବା ଶିକ୍ଷକଙ୍କ ସ୍ଥାନରେ ଓଡ଼ିଆ ଶିକ୍ଷକଙ୍କୁ ଅବସ୍ଥାପିତ କରାଗଲା । ସେହିପରି ଆର୍ଟସ୍ ଗ୍ରାଜୁଏଟ୍ ସ୍ଥାନରେ ସାଇନ୍ସ୍ ଗ୍ରାଜୁଏଟ୍ ଏବଂ ସାଇନ୍ସ୍ ଗ୍ରାଜୁଏଟ୍ ସ୍ଥାନରେ ଆର୍ଟସ୍ ଗ୍ରାଜୁଏଟ୍ ଶିକ୍ଷକଙ୍କୁ ସ୍ଥାନିତ କରାଗଲା । ବ୍ରହ୍ମପୁର ମଣ୍ଡଳ ଅଣଗେଜେଟେଡ୍ କର୍ମଚାରୀ ସମନ୍ୱୟ ସମିତି ତରଫରୁ ଏ ପ୍ରକାର ଅବ୍ୟବସ୍ଥାର ତୀବ୍ର ପ୍ରତିବାଦ କରାଗଲା । ଉମେଶବାବୁ ବିପୁଳ ଜନମତ ହାସଲ କରି ଏ ଆନ୍ଦୋଳନର ନେତୃତ୍ୱ ନେଇ ପୂର୍ବାବସ୍ଥା ଫେରାଇ ଆଣିଥିଲେ ।

ଯଥାର୍ଥରେ କହିବାକୁ ଗଲେ ଉମେଶବାବୁ ଥିଲେ ବହୁମୁଖୀ ପ୍ରତିଭାର ଅଧିକାରୀ । ଏକ ବିରଳ ବ୍ୟକ୍ତିତ୍ୱ । ତାଙ୍କ ସାଂଗଠନିକ ଦକ୍ଷତା ଅପୂର୍ବ । ଜଣେ ପ୍ରଭାବଶାଳୀ ବକ୍ତା । ତଥ୍ୟ ଭିତ୍ତିକ ସାରଗର୍ଭକ ଓଜସ୍ୱିନୀ ବକ୍ତୃତା ଦେଇ ସେ ଶ୍ରୋତାମାନଙ୍କୁ କ୍ଷଣକ ମଧ୍ୟରେ ଚେତେଇ ଦେଇ ମତେଇ ପାରୁଥିଲେ । ତାଙ୍କ ଭାଷଣ ଶୁଣିଲେ ବିଶ୍ୱାସ କରି ହେଉନଥିଲା ସେ ଜଣେ ସାଧାରଣ ଅଣଗେଜେଟେଡ୍ କର୍ମଚାରୀ ବୋଲି । ଓଡ଼ିଶାର ଦାରିଦ୍ର୍ୟର କାରଣ ଏବଂ ତାହାର ନିରାକରଣ ପାଇଁ ତାଙ୍କର ସୁଚିନ୍ତିତ ନିଜସ୍ୱ ମତ ଥିଲା ।

ଋଷିକୁଲ୍ୟା କେନାଲ୍ ଜଳ ଯୋଗାଣରେ ଉନ୍ନତି, ଚିଲିକାର ସୁରକ୍ଷା, ଗୋପାଳପୁର ସବୁଦିନିଆ ବନ୍ଦର, ଓଡ଼ିଶାରେ ବନ୍ୟା ପ୍ରତିରୋଧ ଆଦି ବିଭିନ୍ନ ବିଷୟରେ ତଥ୍ୟାତ୍ମକ ପ୍ରବନ୍ଧ ରଚନା କରି ସେ ବହୁ ସ୍ୱର୍ଣ୍ଣପଦକ ଲାଭ କରିବା ସହିତ ବିଶେଷଜ୍ଞମାନଙ୍କ ଦୃଷ୍ଟି ଆକର୍ଷଣ କରିପାରିଛନ୍ତି । ଫଳରେ ସରକାରୀ ସ୍ତରରେ ଆୟୋଜିତ ବିଭିନ୍ନ ଆଲୋଚନା ଚକ୍ରରେ ସ୍ୱତନ୍ତ୍ର ନିମନ୍ତ୍ରିତ ଭାବେ ଯୋଗଦେଇ ନିଜ ବକ୍ତବ୍ୟର ଯୁକ୍ତିଯୁକ୍ତତା ଦର୍ଶାଇ ସମସ୍ତଙ୍କୁ ଚମତ୍କୃତ କରିଦେଉଥିଲେ । ସେତିକି ନୁହେଁ ଲବ୍‌ଧ ପ୍ରତିଷ୍ଠ ସାହିତ୍ୟିକ ଭାବେ ମଧ୍ୟ ତାଙ୍କ ପ୍ରତିଭା ଅବିସମ୍ବାଦିତ । ଉପନ୍ୟାସ, ଗଳ୍ପ, ଗୀତିନାଟ୍ୟ, ଗବେଷଣା ପ୍ରସୂତ ମୌଳିକ ପ୍ରବନ୍ଧମାନ ରଚନା କରି ସେ ଯଶସ୍ୱୀ ହୋଇପାରିଛନ୍ତି । ଓଡ଼ିଆ ଚଳଚ୍ଚିତ୍ରର ଇତିହାସରେ ମଧ୍ୟ ସେ ଜଣେ ସଫଳ ସଂଳାପ ସ୍ରଷ୍ଟା ଓ ଗୀତିକାର ଭାବେ ପରିଚିତ ।

ଏଥିରୁ ଅନୁମାନ କରିହୁଏ ତାଙ୍କ ବହୁମୁଖୀ ପ୍ରତିଭାର ବିପୁଳ ବିସ୍ତାର । ଚିଲିକାର ପରିବେଶରୁ ଜ୍ୟୋତିଷ ଶାସ୍ତ୍ର, ଗଳ୍ପ, ଉପନ୍ୟାସରୁ ସିନେମାର ସଂଳାପ ଓ ଗୀତ ରଚନା । ସବୁଠି ତାଙ୍କ ପ୍ରତିଭାର ଦିବ୍ୟ ସ୍ପର୍ଶ । ତେଣୁ ଉମେଶବାବୁଙ୍କ ବିୟୋଗ ଏକ ବିରାଟ ପ୍ରତିଭାର ମହା ପ୍ରସ୍ଥାନ । ଆଜି ସେହି ମହାନ୍ ଆତ୍ମାର ସ୍ମୃତିରେ ଶ୍ରଦ୍ଧା ସୁମନଟିଏ ଅର୍ପଣ କରି ଜଗନ୍ନାଥଙ୍କୁ ପ୍ରାର୍ଥନା କରେ, ଆର ପାରିରେ ସେ ଚିର ଶାନ୍ତି ଭୋଗ କରନ୍ତୁ ।

ଜଗନ୍‌ମୋହନ ସାହୁ
ମଞ୍ଜୁଶ୍ରୀ ନଗର, ବ୍ରହ୍ମପୁର-୧

# ଜୀବନାଶ୍ରୟୀ ଉମେଶ ଚରଣ

ଜୀବନର ଅନୁଭୂତର କୋଣ ଅନୁକୋଣକୁ ଦୃଷ୍ଟିରେ ରଖି ତାକୁ ଯାଉଁଟି ଯାଉଁଟି ଯେତେବେଳେ ଲେଖକ ନିଜ କାଳ୍ପନିକ ସଂସାର ଗଢେ, ସେତେବେଳେ ଖୁବ ସହଜରେ ସେ ଭିତରେ ପାଠକ ପାଇଯାଏ ନିଜକୁ । ତେଣୁ ସେଥିର ଗଳ୍ପ କ ଉପନ୍ୟାସ କ କବିତା ପାଠକର ଅତି ନିଜର ମନେ ହୁଏ । ପାଠକ ଭିତରେ ନିଜର ବୋଲି ଏକ ମନୋଭାବ ଯେତେବେଳେ ଲେଖକ ତାର ସୃଷ୍ଟି ପାଇଁ ତିଆରି କରିବିଏ, ସେତେବେଳେ ସେ ସେଠେ ସଫଳ ହୋଇଯାଏ । କଳାକାରଙ୍କର ସଫଳତା ଠିକ ଏଇଠି ଏବଂ ଏହା ଭିତରକୁ ଯିବା ହିଁ ପ୍ରତ୍ୟେକ କଳାକାରର ଶେଷ ଲକ୍ଷ୍ୟ ।

ଓଡ଼ିଆ କ୍ଷୁଦ୍ରଗଳ୍ପ ପରଂପରାରେ ଅନେକ ଅନେକ ଗଳ୍ପ ଲେଖକ ଫକୀର ମୋହନ ଯେଉଁ ଭୂମିକାକୁ ଧରି ଚାଲୁଥିଲେ, ତାକୁ ଧରି ହିଁ ଗାଳ୍ପିକ 'ଉମେଶ ଚରଣ ପାଣ୍ଡିଙ୍କ' "ରଜନୀଗନ୍ଧାର ପ୍ରଶ୍ନ" ଗଳ୍ପଗୁଡ଼ିକୁ ବିଶ୍ଳେଷଣ କରାଯାଇପାରେ ।

"ରଜନୀ ଗନ୍ଧାର ପ୍ରଶ୍ନ" ଗାଳ୍ପିକ ଉମେଶ ଚରଣଙ୍କ ଏକମାତ୍ର ପ୍ରକାଶିତ ଗଳ୍ପ ସଙ୍କଳନ । ସର୍ବୋମୋଟ ସାତଗୋଟି ଗଳ୍ପରେ ଗୁମ୍ଫିତ ଏହି ଗଳ୍ପ ସଙ୍କଳନଟିରେ ଉମେଶ ଚରଣଙ୍କ କ୍ଷୁଦ୍ର ଗଳ୍ପର ସୀମା ସରହଦକୁ ଦେଖିବା ଯଦ୍ୟପି ସଂଭବ ନୁହେଁ ତଥାପି ପ୍ରକାଶିତ ଗଳ୍ପ ସଙ୍କଳନର ନାଃଙ୍କ ଗଳ୍ପ ଗୁଚ୍ଛଟି ହିଁ ଆମର ବିଚାର୍ଯ୍ୟ । "ଜ୍ଞାନର ପ୍ରତିମା", "ଛନ୍ଦହୀନ କବିତା", "ପିଚ୍‌ବୁକ୍", "ପ୍ରଥମ ଓ ତୃତୀୟ ପୁରୁଷ", "ରଜନୀଗନ୍ଧାର ପ୍ରଶ୍ନ", "ସଂଯୋଗ" ଏବଂ ' ଅମୃତ ଚମ୍ପା" ଏହିଭଳି ସାତୋଟି ଗଳ୍ପ ଏଥିରେ ସ୍ଥାନ ପାଇଛି ।

ଉମେଶ ଚରଣ ସର୍ବାନ୍ତଃକରଣରେ ଜଣେ ଔପନ୍ୟାସିକ । ତାଙ୍କର "ଅଶ୍ରୁଟୀକା", "ଘୁମନ୍ତ ମାଳମା" ଉପନ୍ୟାସ ପ୍ରକାଶ ପାଇଛି ।

ଉପନ୍ୟାସ ରଚନା କରିବାରେ ସର୍ବଦା ବ୍ୟସ୍ତ ଉମେଶ ଚରଣଙ୍କ ମନଟି ଯଦିଓ କ୍ଷୁଦ୍ରଗଳ୍ପ ରଚନାରେ ସନ୍ତୁଷ୍ଟ ନୁହେଁ ତଥାପି ଲେଖକର ଲେଖିବାର ବେଦନା ତାଙ୍କୁ ସଦାବେଳେ ଘାରିଛି, ତେଣୁ ବୃତ୍ତିରେ ଯନ୍ତ୍ରୀ ହେଲେ ମଧ୍ୟ ନିଶାରେ ସାହିତ୍ୟିକ । ଏ କଥାକୁ ସେ ସ୍ୱୀକାର କରିଛନ୍ତି ମଧ୍ୟ 'ରଜମାଗଡ଼ାର ପ୍ରଶ୍ନ'ର ପ୍ରଥମ ସଂସ୍କରଣର ମୁଖବନ୍ଧରେ । ସେ ଲେଖିଛନ୍ତି, "ଇଂଜିନିୟର ଜୀବନରେ ସାହିତ୍ୟାନୁରାଗୀ ହେବା ଧୃଷ୍ଟତା ମାତ୍ର । ତଥାପି ସାହିତ୍ୟ ପ୍ରେମୀ, ବନ୍ଧୁ ତଥା ପାଠକ ବନ୍ଧୁମାନଙ୍କ ପ୍ରେରଣା, ଲେଖା ଲେଖି ନିମନ୍ତେ ମୋଠାରେ ଶକ୍ତି କ୍ଷୁଧା ଜାଗ୍ରତ କରାଉଛନ୍ତି । ନିଷ୍କୃତି ପାଇପାରୁନି । ତା ବୋଲି ସାହିତ୍ୟ ପ୍ରତି ଅବହେଳା ଅପରାଧରୁ ମୁକ୍ତି ପାଇନି ।" ତେଣୁ ବେଳେ-ବେଳେ ଖୁବ ସତର୍କତାର ସହିତ ସାହିତ୍ୟିକ ଉମେଶ ଚରଣ ଏବଂ ଇଂଜିନିୟର ଉମେଶ ଚରଣ ମିଶି ଯାଇଛନ୍ତି ଏକା ଭୂମିରେ । ଇଂଜିନିୟର ଏବଂ ଲେଖକ ଭିତରେ ସେତେବେଳେ ଦ୍ୱନ୍ଦ ନାହିଁ, ବରଂ ଅଛି ପ୍ରୀତି ଏବଂ ସମନ୍ୱୟ । ତେଣୁ ଗାଳ୍ପିକ ଉମେଶ ଚରଣଙ୍କ ଦ୍ୱିଧା ବିଭକ୍ତ ମନଟି ସାହିତ୍ୟ ନିଶାରେ ଉଦ୍‌ଫୁଲ୍ଲିତ ହେଲେ ମଧ୍ୟ ଯନ୍ତ୍ରୀ ମନର ଗଠନ କୌଶଳଟିକୁ ସେ ବେଶ ସୁନ୍ଦର ଭାବେ କରାୟତ୍ତ କରିପାରିଛନ୍ତି । ତାଙ୍କ ଗଳ୍ପରେ ତେଣୁ ସମାଜକୁ ଦେଖୁଥିବା ଯାନ୍ତ୍ରିକ ମନଟି ସ୍ପଷ୍ଟଭାବେ ପ୍ରକାଶ ପାଇପାରିଛି ।

ତେଣୁ 'ରଜମାଗଡ଼ାର ପ୍ରଶ୍ନ'ର ସାତୋଟି ଗଳ୍ପରୁ ଗୁବେଷ୍ଟିରେ ଉମେଶ ଚରଣଙ୍କ ଯନ୍ତ୍ରୀ ମନଟି ପ୍ରତ୍ୟକ୍ଷ ଏବଂ ପରୋକ୍ଷଭାବେ ମାଡ଼ି ବସିଛି । ଫଳରେ 'ଜ୍ଞାନର ପ୍ରତିମା' ଗଳ୍ପର ଦ୍ୱିତୀୟ ନାୟକ ସନ୍ତୋଷ ଜଣେ ଇଂଜିନିୟର ଏବଂ "ରଜମାଗଡ଼ାର ପ୍ରଶ୍ନ" ଗଳ୍ପର ନାୟକ ସୁରେଶ ଜଣେ ଇଂଜିନିୟର । ଠିକ୍ ସେପରି 'ଛନ୍ଦହରା ଜନତା" ଏବଂ "ପିତୃସତ୍ତ"ର ଗଳ୍ପର ନାୟକ ପାଠରେ ପରୋକ୍ଷ ଭାବେ ଉମେଶ ଚରଣଙ୍କ ଯନ୍ତ୍ରୀ ମନଟି ପ୍ରକାଶ ପାଇଛି । "ବୃତ୍ତି ଏ ମୋ ପୋଷେ କୁଟୁମ୍ବ" ନ୍ୟାୟରେ ଗାଳ୍ପିକ ଜଣେ ଇଂଜିନିୟର, ମାତ୍ର ଲେଖକ ଉମେଶଚରଣ ଜଣେ ବାସ୍ତବବାଦୀ ସମାଜ ସଚେତନ ମଣିଷ । ତେଣୁ ଯନ୍ତ୍ରୀ ଜୀବନର ସବୁ ସଫଳତାକୁ ଏବଂ ବିଫଳତାକୁ ସମାଲୋଚନା କରିବାକୁ ସେ ପଛାଇ ନାହାନ୍ତି । "ପିତୃସତ୍ତା"ରେ

ଇଂଜନସ୍ବୃତମାନଙ୍କ ଅବଶଚସ୍ବର ଦଗକୁ ସମାଲୋଚନା ମୁକ୍ତ ଭାବରେ କରି ଲେଖିଛନ୍ତି, "ଇଂଜନସ୍ବୃରମାନେ ନିଜ ସ୍ବ ତି ଯୋଗାଇବା ପାଇଁ ସସ୍ତାକୁ ସିଧା କରିବାରେ, କରଦ ତାଙ୍କ ଅର୍ଥ ଶ୍ରାଦ୍ଧ କରିବ ରେ ବ୍ୟସ୍ତ ।" ରଜମାତାଦାର ପ୍ରଶ୍ନ — ପ୍ରକାଶକ — ବଜସ୍ଵ ବୁକ୍ ଷ୍ଟୋର, ୨ୟ ସଂସ୍କରଣ, ୧୯୯୫ ପୃ- ୫୪) ତେଣୁ ବୃତ୍ତିକୁ ପ୍ରବୃତ୍ତି ଭିତରେ ସୁନ୍ଦର ଭାବେ ମିଶାଇ ଦେବାର କଳା ଗାଳ୍ପିକ ଉମେଶଚନ୍ଦ୍ରଙ୍କୁ ସବଦା ମତ୍ତ କରି ରଖିଛି ।

ଗାଳ୍ପିକ ଉମେଶଚରଣ ଜଣେ ଦ୍ରଷ୍ଟା ମାତ୍ର । ତେଣୁ ସେ ଯାହା ଦେଖିଛନ୍ତି ତାକୁ ନିଛକ ଭାବେ ପ୍ରକାଶ କରିବାର ଇଚ୍ଛାକୁ ଦମନ କରିପାରି ନାହାନ୍ତି । ସମାଜ ଜୀବନକୁ ତନ୍ନ ତନ୍ନକରି ଦେଖିଛନ୍ତି ସେ । ତେଣୁ ସାତଟିଯାକ ଗଳ୍ପରେ ଗାଳ୍ପିକଙ୍କ ଦର୍ଶକ ଭୂମିକାରେଉନ୍ତି ପାଠକକୁ ପାଖକୁ ଡ଼ାକିବାର କୌଶଳଟି ବେଶ ଚମତ୍କାର । ସାତଟି ଗଳ୍ପରୁ ଛଅଟି ପ୍ରେମପାଶରେ ବନ୍ଧା । 'ଜ୍ଞାନର ପ୍ରତିମା', 'ଛନ୍ଦହଜା କବିତା', 'ପ୍ରଥମ ଓ ତୃତୀୟ ପୁରୁଷ', 'ରଜମା ତାହାର ପ୍ରଶ୍ନ', 'ସଂଯୋଗ' ଏବଂ "ଅମୃତଶିନ୍ଧା" ସବୁ ଗଳ୍ପର ଭୂମିବସ୍ତାର ପ୍ରେମକୁ ନେଇ । ଉମେଶଚରଣ ଯଦିଓ ଗଳ୍ପଗୁଡିକରେ ପ୍ରେମର ବର୍ଣ୍ଣନା କରିବାବେଳେ ଦେହ ଭିତରେ ପାଠକକୁ ପଶାଇଛନ୍ତି ମାତ୍ର ମୁହୂର୍ତ୍ତିକରେ ମଧ୍ୟ ଦେହାତୀତ ବା ଶାଶ୍ବତ ପ୍ରେମର ଅନୁଭୂତିରେ ମଧ୍ୟ ପାଠକକୁ ଉପାଶିତ କରିଛନ୍ତି । 'ଜ୍ଞାନର ପ୍ରତିମା' ଗଳ୍ପରେ ନାୟକ ନାୟିକାଙ୍କ ପ୍ରେମ ସମ୍ପର୍କ ଯେଉଁ ମୁହୂର୍ତ୍ତିକ ପାଇଁ ତାଙ୍କୁ ଦେହର ସୀମା ଭିତରକୁ ନେଲା, ତା ପାଇଁ ଜଣେ ମଣିଷ ନିଜ ନିଜ ଜୀବନକୁ ତିଳ ତିଳ କରି ପ୍ରାୟଶ୍ଚିତ କଲା, ଏହା ହିଁ ଅନନ୍ୟ । ଏ ଅନନ୍ୟତା ପ୍ରେମିକ ପ୍ରେମିକାର ନାହିଁ । କାରଣ ଉମେଶ ଚରଣ ଜଣେ ସମାଜ ସଚେତନ ଏବଂ ସମାଜ ସୁଧାରକ ଶିଳ୍ପୀ । ତେଣୁ ନାୟିକାର ଭାଇ ସିଏ କି ନାୟକ ଓ ନାୟିକାର ପ୍ରେମିକାର ବନ୍ଧୁ । ସେ ଏ ପ୍ରାୟଶ୍ଚିତ କରିଛି । ତାର କାରଣ ତା ପାଇଁ ଦେହ ସମ୍ପର୍କ ନେଇ ଯେଉଁ ନାୟକ ନାୟିକା ଅଛନ୍ତି, ତାକୁ ଛିନ୍ନକରି ସେ ପ୍ରତିଷ୍ଠା କରିଛନ୍ତି ଦୁଇ ବନ୍ଧୁର ଅନ୍ତର ମିଳନ । ତେଣୁ ନିଜର ବନ୍ଧୁକୁ ଭଗୀ ପତିର ସମ୍ପର୍କରେ ନବାନ୍ଧି ସେ ସେଠି କହିଛି, "ସମାଜ ବନ୍ଧନରେ ବାନ୍ଧି ହୋଇ

ଏବଂ ସମାଜର ନିର୍ଦ୍ଦିଷ୍ଟ ପରିସର ଭିତରେ ଚଳ ପ୍ରଚଳ ଓ କଥାବାର୍ତ୍ତା କରି, ଆମ ଦୁହିଁଙ୍କ ବନ୍ଧୁତ୍ୱକୁ ସୀମିତ କରିବାକୁ ମୁଁ ଚାହିଁଲିନି। କାରଣ, ତା ହେଲେ ଆମ ଭଲ ପାଇବା ତଥା ଆନ୍ୟଥାରେ ନିଜର ସମସ୍ତ ପ୍ରକାର ଦାବି ପୂରଣ କରି ନେବାର ପରିସ୍ଥିତିର ଆଶା ଆକାଂକ୍ଷା ଧୂଳିସାତ୍ ହେବ। ଚୂରମାର ହୋଇଯିବ ଆମ ଦୁହିଁଙ୍କ ଆନ୍ତରିକ ଭଲ ପାଇବାଟା କେବଳ ସମ୍ମାନ ଓ ମର୍ଯ୍ୟାଦା ହିଁ ଆମ ଭଲ ପାଇବା ଭିତରେ ପ୍ରାଧାନ୍ୟ ଲାଭ କରିବ। ବ୍ୟବହାର କରିବାକୁ ପଡ଼ିବ ସ୍କେଲ, ଡ଼ିଭାଇଡ଼ର, ପ୍ରୋଟ୍ରାକ୍ଟର ସାହାଯ୍ୟରେ ମାପିଚୁପି।" (ରଜନୀଗନ୍ଧାର ପ୍ରଶ୍ନ - ପ୍ରକାଶକ- ବିଜୟ ବୁକ୍ ଷ୍ଟୋର ୧୯୯୫, ପୃ- ୨) ଠିକ୍ ଏହି ମନୋଭାବ ହିଁ ଉମେଶ ଚରଣଙ୍କ ସବୁ ଗଳ୍ପରେ ଅଛି। ତେଣୁ 'ଛନ୍ଦହରା କବିତା' ରେ ନାୟକ ଷ୍ଟୀଫ୍ ଯେତେବେଳେ ବଞ୍ଚିତ ହୋଇ ନାୟିକା ଦ୍ୱାରା ପ୍ରତ୍ୟାଖ୍ୟାତ ହୋଇଛି, ସେତେବେଳେ ଷ୍ଟୀଫ୍‌ର ବନ୍ଧୁ ଜେମସ୍ କହୁଛି, "ହେଲେ ଏଇ ଝିଅଟି ଏକ ଛନ୍ଦହରା କବିତା। ଝିଅ ମିଶିବାର ବହୁ ପୂର୍ବରୁ ଅପେକ୍ଷା କରି କରି ଛନ୍ଦଟିକୁ, ଭୁଲିଯାଇଛି। ସେ କେବଳ ଭଲ ପାଉଛି ଇଂଜିନର ଅଙ୍ଗ୍ଲୋ-ଇଣ୍ଡିୟାନ୍ ଡ୍ରାଇଭରକୁ। ଜେମସ୍ ନୁହଁ କି ବା ଷ୍ଟୀଫ୍ ନୁହଁ। ଝୁରୁଛି ଓ ଝୁରୁଥିବ" (ରଜନୀଗନ୍ଧାର ପ୍ରଶ୍ନ —ପୃ· ୫୦)

'ରଜନୀଗନ୍ଧାର ପ୍ରଶ୍ନ' ଗଳ୍ପରେ ମଧ୍ୟ ସୁରେଶ ଠିକ୍ ଏହି ପ୍ରଶ୍ନର ସମ୍ମୁଖୀନ ହୋଇଛି। ତେଣୁ ବାପାଝିଅର ଦେହ ପ୍ରତି ଥିବା ସବୁ ଆକର୍ଷଣକୁ ଏଡ଼ାଇ ନାୟକ ସୁରେଶ ଚାଲିଯାଇଛି। 'ସଂଯୋଗ' ଗଳ୍ପରେ ପ୍ରେମର ଏକ ଶାଶ୍ୱତ ପରିଣତି ଦୃଷ୍ଟିଗୋଚର ହୁଏ। ଦେହର ସୀମାରୁ ନାୟିକାକୁ ବାହାର କରିଦେଇ ବିଧବା ହେବା ପରେ ପ୍ରଥମ ନାୟକ ବା ପ୍ରଥମ ପ୍ରେମିକା ସହ ବିବାହ କରାଇବାରେ ଲେଖକଙ୍କ ଏହି କର୍ତ୍ତବ୍ୟ ହିଁ ଅଛି। 'ଅମୃତ ଚମ୍ପା' ଗଳ୍ପରେ ନାୟିକା ଚମ୍ପି ନିଜ ଜୀବନକୁ ତିଳ ତିଳ କରି ସମାଜକୁ ସୁଧାରିବା ପାଇଁ ବଢ଼ାଇଦେଇଛି କେବଳ ନାୟକ ସପନାକୁ ଭଲପାଇ। ତେଣୁ ସ୍ତ୍ରୀ ପୁରୁଷ ଭିତରେ ପ୍ରେମକୁ ଦେହାତୀତ କରିବା ଏକ ପ୍ରୟାସ କରିଛନ୍ତି ଲେଖକ। ଏହାର ଫଳସ୍ୱରୂପ 'ଜ୍ଞାନର ପ୍ରତିମା' ରେ ସନ୍ତୋଷ ହୋଇଛି ଜ୍ଞାନର ପ୍ରତୀକ

'ଚନ୍ଦନବନ କବିତା'ରେ ଷ୍ଟାଗ୍ ହୋଇଛନ୍ତି ବକୁଳ; 'ରଜନୀ ଗନ୍ଧାର ପ୍ରଶ୍ନ'ରେ ସୁରେଶ ହୋଇଛନ୍ତି ଗାଁର ଅପାଠୁଆଙ୍କ ବନ୍ଧୁ; ସୁଯୋଗରେ ବଧୂ ଭାବୁ ହୋଇଛନ୍ତି ମହାପୁରୁଷ ଏବଂ 'ଅମୃତଚମ୍ପା'ରେ 'ଚମ୍ପୀ' ହୋଇଛନ୍ତି ସମାଜ ସୁଧାରିକା। କେବଳ ମାତ୍ର 'ପ୍ରଥମ ଓ ଶେଷ ପୁରୁଷ' ଗଳ୍ପରେ ଲେଖକ ଗଳ୍ପ ଭୂମିକାଟିକୁ ଦେହ ଭିତରେ ସୀମାବଦ୍ଧ କରିଛନ୍ତି। ତଥାପି ସେ ଦେହ ପ୍ରେମ ନୁହେଁ ତାହା କେବଳ 'ଛତିଶ ନମ୍ବର ବଡ଼ିଜ୍' ସାଇଜ୍ ଭିତରେ ହିଁ ସୀମିତ।

ଗାଳ୍ପିକ ଯଦିଓ ଜଣେ ଦ୍ରଷ୍ଟା ତଥାପି ଉମେଶଚରଣ ତାଙ୍କ କର୍ମକୁ ଦେଖିବା ଭିତରେ ସୀମିତ କରି ରଖି ନାହାନ୍ତି। ନିଜର ଉଦ୍ଦାମ ମନକୁ ନେଇ ସେ ଯେମିତି ସମାଜର ସବୁ ଅସଙ୍ଗତିକୁ ଦୂର କରିପାରିବେ, ସେଥି-ପାଇଁ ଚେଷ୍ଟା କରିଛନ୍ତି। ତେଣୁ 'ରଜନୀଗନ୍ଧାର ପ୍ରଶ୍ନ'ରେ ସ୍ୱାଧୀନତା ପରବର୍ତ୍ତୀ ଭାରତବର୍ଷରେ ଯେଉଁ ଜନ ସମସ୍ୟା, ତାର ଟାଉଟର କରଣ ଏବଂ ତାର ସୁଧାର ସବୁକୁ ସେ ତର୍ଜମା କରିଛନ୍ତି। 'ଅମୃତଚମ୍ପା'ରେ ନିଶା ନିବାରଣକୁ ନେଇ ସେ ଚିନ୍ତିତ। ନିଶା ନିବାରଣ ପାଇଁ ଚମ୍ପୀର ଉଦ୍ୟମ ଆଗରେ ସରକାର ମୁଣ୍ଡ ନୁଆଁଇଛନ୍ତି ମଧ୍ୟ। ସେଠି ଗାଳ୍ପିକ ନିଜ ଚିନ୍ତନରେ ଏତେ ମସ୍‌ଗୁଲ ଯେ 'ଅମୃତଚମ୍ପା' ଗଳ୍ପରେ ସେ ନିଶା ଛଡ଼ାଇବା ପାଇଁ ଔଷଧକୁ ମଧ୍ୟ ଲେଖି ଦେଇଛନ୍ତି। "ମଦୁଆ ପାଇଁ ମଦ ଛାଡିଥିବା ଭାରିଟା ଖୁବ କଷ୍ଟ। ଜେଲ ଯିବା ପୂର୍ବରୁ ସାହୁକାର ଛାଡ଼ିଥିଲା। ତଣ୍ଟି ଶୁଖି ଯାଉଥାଏ। ଛାତି ଧଡ଼ ଧଡ଼ ହୁଏ। ଖୁବ ଝାଳ ବୋହେ। ମୁଁ ଖାଲି ପଣା ଚୋବାଣି ଦେଇ ସମ୍ଭାଳୁଥିଲି। ପରଦିନ ଡାକ୍ତରଙ୍କୁ ଦେଖାକରି କହିଲି। ସେ କହିଲେ 'ଆଚ୍ଛା କଲ। ମଦ ଛାଡ଼ିବା ଏକ ରୋଗ। ପାଣି ପଣା ହିଁ ତା ଔଷଧ। ନ ହେଲେ ଏମିତି ଇଂଜେକ୍ସନ ରକ୍ତରେ ଦେବାକୁ ହୁଅନ୍ତା।" (ରଜନୀ ଗନ୍ଧାର ପ୍ରଶ୍ନ-ପୃ-୧୪୫)

ସ୍ୱପ୍ନକୁ ନେଇ ବଞ୍ଚିଛନ୍ତି ଗାଳ୍ପିକ। ତେଣୁ ଗଳ୍ପର ପ୍ରଥମରେ ହେଉ କି ଶେଷରେ ସମାଜର ଉନ୍ନତି ପାଇଁ ବେଶ ଦୁଇ ଧାଡ଼ି ମୁକ୍ତ କଣ୍ଠରେ କହିଛନ୍ତି। ଯଦିଓ ଗଳ୍ପରେ ତାକୁ ଅନାବଶ୍ୟକ ମନେହୁଏ, ତଥାପି ତାର ସ୍ଥାନ ଜୀବନ ପାଇଁ ଅତି ଆବଶ୍ୟକ। ତାଙ୍କ ସ୍ୱପ୍ନର ଏକ ସଫଳ ପ୍ରୟାସ

'ପିଚୁ ବସ୍ତା' ଗଳ୍ପ । ଯେଉଁଠି ସେ ସ୍ୱାଧୀନତା ପରବର୍ତ୍ତୀ ଭାରତ ବର୍ଷର ସବୁ ବ୍ୟକ୍ତିର ଚରିତ୍ରକୁ ଖୁବ ଅଳ୍ପରେ ବର୍ଣ୍ଣନା କରିଛନ୍ତି । ସେଠି ନେତା ଅଛନ୍ତି । ଶ୍ରମିକ ଅଛନ୍ତି, କାରଖାନା ମାଲିକ ଅଛନ୍ତି, ସ୍ୱାଧୀନତା ସଂଗ୍ରାମୀ ଅଛନ୍ତି । ଶ୍ରମିକଙ୍କ ହାତରେ କାରଖାନା ଏବଂ ତାର ଉପରେ ଦେଶର ଭବିଷ୍ୟତ ଏକଥା ସେଥିରେ ସେ ଜଣାଇଛନ୍ତି । ସେ ଲେଖିଛନ୍ତି, ଦେଶରେ ପିଚୁ ବସ୍ତା ଯେତେ ପଡ଼ିବ, ମଣିଷ ସମାଜ ଭିତରେ ସଂଘର୍ଷ ସେତେ ହ୍ରାସ ପାଇବ । ମଣିଷ ସ୍ୱଚ୍ଛ ଓ ଶିକ୍ଷିତ ହେବ—ସଭ୍ୟତା ଓ ସଂସ୍କୃତିର ତାରତମ୍ୟ ଦୂର ହେବ-ଶ୍ରମ ଓ ଶାସନର ସମନ୍ୱୟ ଘଟିବ ।" (ଇନ୍ଦ୍ରଧନୁର ପ୍ରଶ୍ନ—ପୃ-୮୧) ପୁଣି "ଦେଶ ସେବା ମନ୍ତ୍ରୀତ୍ୱରେ ନୁହେଁ । ହୁଏ ଶ୍ରମରେ ।" ତେଣୁ ଶ୍ରମ, ଶ୍ରମିକ ଏବଂ ସାଧାରଣ ଜୀବନର ଉନ୍ନତି ପାଇଁ ଗାଳ୍ପିକ ଏଠି ବେଶ ସଚେତନ । ଗାନ୍ଧୀଙ୍କ ସ୍ୱପ୍ନକୁ ନିଜ ଗଳ୍ପରେ ସେ ରୂପାୟିତ କରିଛନ୍ତି ମାତ୍ର ।

ତେଣୁ ଗଳ୍ପ ଗୁଡ଼ିକୁ ତନ୍ନ ତନ୍ନକରି ଦେଖିଲେ ଉମେଶ ଚରଣ ଯେ ଜଣେ ଜୀବନାଶ୍ରୟୀ ଶିଳ୍ପୀ ଏଥିରେ ଦ୍ୱିଧା ନାହିଁ ।

ଗଳ୍ପ ଗଠନ ଏବଂ ଭାଷାରେ ଉମେଶ ଚରଣ ଖୁବ ସରଳ । ତେଣୁ ଗଳ୍ପ ଗୁଡ଼ିକ ପାଠକର ମନଛୁଆଁ । ଗଳ୍ପର ଟେକ୍‌ନିକ୍ ପ୍ରତି ସେ ସେତେ ସଚେତନ ନୁହନ୍ତି । ଜଣେ ଭାବ ବିଳାସୀ ଶିଳ୍ପୀ । ତେଣୁ ବେଳେବେଳେ ଅନେକ କଥା ଭାବନାର ଖିଆଲରେ ଗଳ୍ପରେ ସେ ଗୁନ୍ଥି ଦେଇଛନ୍ତି । ଏକଥାକୁ ସେ ଉପଲବ୍ଧି କରିଛନ୍ତି ମଧ୍ୟ, ତାଙ୍କ ନିଜସ୍ୱ ମତରେ । "ସମୟର ଅଭାବରେ କାବ୍ୟ ରଚନା ରୂପାୟିତ ହୁଏ କବିତାରେ । ଦୂରେଇଯାଏ, ଯମକ ଯତିପାତ ଅନୁପ୍ରାସକୁ, ଅଭିଧାନର ଅଭାବରେ ହସିଉଠେ ଛନ୍ଦ, ଗୀତ ହରାଏ ପାର୍ଶ୍ୱ ଆଡମ୍ବର । ସଙ୍ଗିନୀ ଶିକ୍ଷାର ଅଭାବରେ ହୁଏ ଗଦ୍ୟ କବିତା, ସେଭଳି ରଚନାତ୍ମକ ଶୈଳୀର ଅଭାବରେ ସାହିତ୍ୟ ହୁଏ ଅନୁବାଦ ସର୍ବସ୍ୱ କମ୍ପା ପୁଂଜି ଲୋଭରେ ଅନ୍ୟ ଲେଖକର ଗଳ୍ପ ଗୁଡ଼ିକର ସଙ୍କଳନ, ଅଥବା ଅନାଦୃତ ଗଳ୍ପ ଗୁଡ଼ିକୁ ଗୁଣି ତାଙ୍କୁଥୋଇ ଶ୍ରେଷ୍ଠ ଗଳ୍ପର ସଙ୍କଳନ । ଏଣେ ପାଠାଗାର ପ୍ରୋତ୍ସାହିତ ଅଭାବରେ ଘଟିଲାଣି ସାହିତ୍ୟର ମୂଳୋତ୍ପାଟନ । X X X । ଦେଖୁ ଦେଖୁ ଗଳ୍ପ କବିତା ଆଦର ଆକାର ହେଲା

ଖୁବ ଶ୍ରେଷ୍ଠ, ମିନିଗଳ୍ପ, ମିନି କବିତା ଇତ୍ୟାଦି ।" (ରଜନୀଗନ୍ଧାର ପ୍ରଶ୍ନ, ୧୯୫୫ ଲେଖକଙ୍କ କଲମରୁ......)

ତେଣୁ କଳା ଯେ ଜୀବନ ପାଇଁ ଏହାକୁ ହିଁ ବିଶ୍ୱାସ କରିଛନ୍ତି ଉମେଶ ଚରଣ ତାଙ୍କ ଗଳ୍ପ ଗୁଚ୍ଛ 'ରଜନୀଗନ୍ଧାର ସ୍ୱପ୍ନ'ରେ ।

ଓଡ଼ିଆ କ୍ଷୁଦ୍ରଗଳ୍ପ ପରଂପରାରେ ଉମେଶ ଚରଣଙ୍କ ଏହି ଗଳ୍ପ ସଙ୍କଳନ ସତରେ 'ରଜନୀଗନ୍ଧା' । ଯିଏ କେବଳ ବାସୁଛି ମାତ୍ର, ଅଦ୍ୟାପି ଲୁକ୍‌କାୟିତ ମାତ୍ର ତାର ବାସ୍ନାର ସବୁଜତା ହିଁ ତାର ବୈଶିଷ୍ଟ୍ୟ ।

**ସିଦ୍ଧାର୍ଥ ଶଙ୍କର ପାଢ଼ୀ**

—o—

# ଔପନ୍ୟାସିକ ଉମେଶଚରଣ ସହ କେତୋଟି ଅନ୍ତରଙ୍ଗ ମୁହୂର୍ତ୍ତ

ଆପଣେଇ ନେଇଥିବା ଲୋକମାନଙ୍କ ସମ୍ପର୍କରେ କିଛି କହିବା ଅତ୍ୟନ୍ତ କଷ୍ଟକର । ସବୁକଥା ଅତି ସାଧାରଣ ଓ ମାମୁଲି ମନେହୁଏ କିନ୍ତୁ ଆପଣେଇ ନେଇଥିବା ସେଇ ଲୋକଟିର ତିରୋଧାନ ପରେ ଏଇ ସାଧାରଣ ଘଟଣା ଗୁଡ଼ାକ ଅସାଧାରଣ ମନେ ହୁଏ, ଛୋଟ ଛୋଟ ଘଟଣା ଗୁଡ଼ିକ ଖୁବ୍ ବଡ଼ ହୋଇ ଉଜଳି ଉଠେ । ମନ ଗନ୍ତାଘରେ ସାଇତା ହୋଇ ରହିଥିବା ସ୍ମୃତି ଭିତରୁ ଏଇ ଚେତନା ଗୁଡ଼ିକ ସଚଳ ସଜୀବ ହୋଇ ମନଟାକୁ ଛିନ୍ନଭିନ୍ନ କରି ପକାଏ । ଠିକ୍ ସେଇମିତି ଉମେଶବାବୁଙ୍କ ସହିତ ମୋର ପରିଚୟ । ଅତି ଅପ୍ରତ୍ୟାଶିତ ଆଉ ଆକସ୍ମିକ ଭାବରେ ଚଳିତ ଶତାବ୍ଦୀର ଷଷ୍ଠ ଦଶକ ଶେଷ ଆଡ଼କୁ ତାଙ୍କୁ ମୁଁ ପ୍ରଥମେ ଭେଟିଥିଲି । ଜୀବିକା ଦୃଷ୍ଟିରୁ ସେ ଥିଲେ ଯନ୍ତ୍ରୀ ଆଉ ଅଧ୍ୟାପନା ମୋର ପେଷା ଉପନ୍ୟାସ ଅଧ୍ୟୟନ ଓ ଉପନ୍ୟାସର ଅନୁଶୀଳନ ପ୍ରତି ଅଧିକ ଦୃଷ୍ଟି ନିକ୍ଷେପ କରିଥିବା ହେତୁ ମୋର କେତୋଟି ପ୍ରବନ୍ଧ ସେତିକି ବେଳକୁ ବିଭିନ୍ନ ପତ୍ର ପତ୍ରିକାରେ ପ୍ରକାଶିତ ହୋଇଥାଏ । ସମ୍ଭବତଃ ଏହାଥିଲା ଆମ ପରିଚୟର ହେତୁ । ମୋର ସତୀର୍ଥ ସମଧର୍ମୀ ବନ୍ଧୁ ଶ୍ରୀଯୁକ୍ତ ସୁଦର୍ଶନ ଆଚାର୍ଯ୍ୟ ଉମେଶ ବାବୁଙ୍କୁ ମୋ ସହିତ ପରିଚୟ କରାଇଦେଲେ ହାତରେ ଗୋଟାଏ ପାଣ୍ଡୁଲିପି । ସେହିଦିନ ଠାରୁ ତାଙ୍କର ଶେଷ ନିଃଶ୍ୱାସ ପର୍ଯ୍ୟନ୍ତ ଯେଉଁ କେତୋଟି ଅନ୍ତରଙ୍ଗ ମୁହୂର୍ତ୍ତ କଟିଛି ସେ ସବୁ ଭୁଲିବାର ନୁହେଁ । ବହୁ ଆଳାପ ଆଲୋଚନା ଭିତରେ ଗୋଟିଏ ଗ୍ରହଣଶୀଳ ମଣିଷର ରୂପକୁ ଦେଖିଛି, ଦେଖିଛି ତାର ଉଦାରତା, ନମ୍ରତା ଆଉ ଦୃଢ଼ତାର ଉଗ୍ରରୂପ ସବୁ ଯେମିତି ଜୀବନର ଛୁଇଁକାଏ ରୂପ; ବାସ୍ତବ ଜୀବନର ଏକ ସାଲିସହୀନ ବ୍ୟକ୍ତିତ୍ୱ ।

ଉମେଶବାବୁ ସେଦିନ ପାଣ୍ଡୁଲିପିଟି ଦେଲାବେଳେ ମୁଁ ତାଙ୍କୁ ସ୍ପଷ୍ଟ ଭାବରେ ଜଣାଇଥିଲି "ଦେଖନ୍ତୁ ମୁଁ କେବଳ ଜଣେ ମୁଗ୍ଧ ପାଠକ, ଉପନ୍ୟାସକାର ନୁହେଁ ତେଣୁ ମୋର ଦୃଷ୍ଟିକୋଣ ପାଠକୀୟ ହେବା ସ୍ୱାଭାବିକ ।

ଯାହା ମୋତେ ଭଲ ନ ଲାଗିବ ତାକୁ କଚୁଣି ଲଗାଇବାରେ ଯଦି ଆପଣଙ୍କର ଆପତ୍ତି ନଥାଏ ତାହାହେଲେ ପାଣ୍ଡୁଲିପିଟି ଦିଅନ୍ତୁ । ଉପନ୍ୟାସ ସଂପର୍କରେ ଯାହା ଜାଣିଛି, ଯେତିକି ପଢ଼ିଛି ସେ ସବୁକୁ ମିଶାଇ ଏକ ଫେଣ୍ଟାଫେଣ୍ଟି ରୂପ ଦେବାକୁ ଚେଷ୍ଟା କରିବି ।'' ସବୁଥିରେ ସମ୍ମତି ଜଣାଇ ଅକୁଣ୍ଠିତ ଚିତ୍ତରେ ସେ ମୋତେ ପାଣ୍ଡୁଲିପିଟି ଦେଇଗଲେ । ଜଣେ ଲେଖକଙ୍କର ଯେଉଁ ସମ୍ମାନ ବୋଧ, ସ୍ୱାଭିମାନ ଓ ମୂଲ୍ୟବୋଧ ଥିଲା ସେ ତାହାଙ୍କୁ ସେଦିନ ଯେ ଜଳାଞ୍ଜଳି ଦେଇଥିଲେ ତାହା ନୁହେଁ ବରଂ ଜଣେ ପାଠକର ଦୃଷ୍ଟିକୋଣ ଓ ସୃଷ୍ଟିର ସମାଲୋଚନାକୁ ସମ୍ମାନ ପ୍ରଦାନ କରିବା ଥିଲା ତାଙ୍କର ଏକମାତ୍ର ଉଦ୍ଦେଶ୍ୟ ଲେଖକ ଲେଖେ । ଲେଖାମାତ୍ରେ ବୋଲି ସେ ଲେଖେ । ଜୀବନରେ ଅଙ୍ଗେ ନିଭେଇ ଥିବା ଘଟଣା, ଭେଟିଥିବା ଅସୁମାରି ମଣିଷମାନଙ୍କ ଭିତରୁ ଯାହାର କିଛି ସ୍ୱତନ୍ତ୍ରତା ଅଛି ବୋଲି ସେ ଭାବେ ସେ ସବୁକୁ ମନୋରାଜ୍ୟରେ ସାଇତି ରଖେ । ପରେ ଏକ ନିର୍ଦ୍ଦିଷ୍ଟ ଜୀବନ୍ତ ରୂପରେ ସ୍ୱତଃ ପଦାକୁ ବାହାରିବା ପାଇଁ ଏହା ପ୍ରୟାସ କରେ । ଉପନ୍ୟାସ କ୍ଷେତ୍ରରେ ଏହା ଅଧିକ ପରିମାଣରେ ପ୍ରଯୁଜ୍ୟ, କାରଣ ସମାଜ ଓ ବାସ୍ତବ ଜୀବନର ଏହା ନିଚ୍ଛକ ପ୍ରତିଛବି । ଏବେ ବି ମନେଅଛି 'ଅଶ୍ରୁଟୀକା' ଉପନ୍ୟାସର ପ୍ରସବ ବେଦନା ଉମେଶବାବୁ ଗ୍ରହଣ କରିଥିଲେ କିନ୍ତୁ ଏହାର ନାମକରଣ ଠାରୁ ଲାଳନ ପାଳନର ଦାୟିତ୍ୱ ସେ ମୋ ଉପରେ ଅର୍ପଣ କରିଥିଲେ । ଏଗାଠିଏ ଦରଦୀ ନରମ ପୁଚ୍ ପୁଚ୍ ସେ ହୃଦୟୀ ନାୟିକୁ ଉମେଶବାବୁ ଜନ୍ମ ଦେଇଥିଲେ । ନାରୀ ଜୀବନର ବ୍ୟଥା ବେଦନାକୁ ସେ କେଉଁଠୁ ପାଇଲେ କିପରି ପାଇଲେ; ନାରୀ ମନର ହକାର ଓ ଇନ୍ଦ୍ରିୟ ବିକାରର ସଂପର୍କ କିପରି ତାଙ୍କ ଚେତନା ଚଉହଦୀ ଭିତରକୁ ଆସିଛି ସେସବୁକୁ ପରଖି ଦେଖିବା ପାଇଁ ବେଳାଭୂମିର ଶାନ୍ତ ସ୍ନିଗ୍ଧ ପରିବେଶ ଭିତରେ କେତୋଟି ମୁହୂର୍ତ୍ତ ମୋତେ ତାଙ୍କ ସଙ୍ଗତ କଟାଇବାକୁ ହୋଇଛି । ସେ କେବଳ ଗୋଟିଏ ପ୍ରାଣ ଖୋଲା ହସ ହସି ଅତି ସହଜ ଭାବରେ ସରଳ ଉତ୍ତରଟିଏ ପ୍ରଦାନ କରିଥିଲେ ''ଲେଖକ କ'ଣ ଗୋଟାଏ ନିଆରା ମଣିଷ କି ଆଜ୍ଞା? ଯାହା ଦେଖିଛି, ଅଙ୍ଗେ ନିଭେଇଛି ତାକୁହିଁ ରୂପ ଦେଇଛି । ଆଜି ସେତିକିରେ ଅଶ୍ରୁଟୀକା ଉପନ୍ୟାସର ଚୁକ୍ତିଦର ପରିକଳ୍ପନା । ଏକ ସିଲହଟ ଛବି ମଧ୍ୟରେ ଅଧା ଦେଖା ଅଧା ଅଦେଖା ମଣିଷର ରୂପ,

କେବଳ ସେତିକି ନୁହେଁ ଘଟଣାର ଆରମ୍ଭଠାରୁ ପ୍ରେମର ଶେଷ ପର୍ଯ୍ୟନ୍ତ ଔତ୍ସୁକ୍ୟ, ଆବେଗ ଓ ପ୍ରେମର ଦୃଢ଼ତା ଭିତରେ ବନ୍ଧୁ ଜୀବନ୍ତ ମୂର୍ତ୍ତି ଅନ୍ତର୍ଦ୍ଧାନ ହୋଇଛନ୍ତି ଉମେଶ ବାବୁଙ୍କ ସମ୍ପୃକ୍ତ ପାଣ୍ଡୁଲିପିର ଏକ ତୃତୀୟାଂଶ ବାଦ୍ ଦିଆଯାଇଛି ଏଥିର ଚମତ୍କାରିତା ପାଇଁ ସନ୍ଧ୍ୟାକୁ ଅପରୂପ ବେଶରେ ସଜାଇ ଗଣ ପାଖକୁ ପ୍ରେରଣ କଲାପରେ ବି ସେ ମୋତେ ପ୍ରଥମ ସାକ୍ଷାତରୁ ମୁକ୍ତି ଦେଇଛନ୍ତି । କିନ୍ତୁ ପ୍ରେମ ବନ୍ଧନରୁ କିଏ କ'ଣ ମୁକ୍ତି ପାଇପାରେ ?

ପାଞ୍ଚ ତିରିଶି ବର୍ଷ ତଳେ ଦେଖିଥିବା ନାୟିକାର ମନୋବେଦନା ଘଟଣା ପ୍ରବାହରେ ରୂପାନ୍ତରିତ ହୋଇ ନୂଆ ରୂପ ପରିଗ୍ରହଣ କରିଛି । ଚାନ୍ଦା ଚେତନାର ଆବର୍ତ୍ତର ବଳୟ ମଧ୍ୟରୁ ମୁକ୍ତିଲାଭ କରିଛି । ଏହି ପୃଥିବୀରେ କେତେ ନଣ୍ଡ, କେତେ ଯନ୍ତ୍ରଣା, କେତେ ମିଳନ, କେତେ ସୁଖ, କେତେ ବ୍ୟାକୁଳତା ଆନ୍ତରିକତା, କେତେ ଦାନ ପ୍ରତିଦାନ ଜ୍ୟୋତ୍ସ୍ନା ସୁଷମାରେ ପରିପୂର୍ଣ୍ଣ କିନ୍ତୁ ଛତର ଦରଘ ମଣିଷଟି ଖୋଜୁଛି ସେଇ ମନର ମଣିଷକୁ । ଏହି ଚିତ୍ରଗୁଡ଼ିକ କେବଳ ସେତିକି ବେଳେ ମୁଗ୍ଧ କରିଛି ଭିନ୍ନ ପ୍ରତିବର୍ଷ ବର୍ଷାର ଆଗମନରେ କେଉଁ ବିରହୀ ଯକ୍ଷ ଅନ୍ତରର ବିରହ ଜ୍ୱାଳା ଦଂଶନ କରିଥିଲେ ଆଜି ତା'ର ଉପଶମ ପାଇଁ ମନର କୋହ ଟିକକ ଭାଂଗିବା ପାଇଁ ମେଘକୁ ଦୂତ ଭାବରେ ପ୍ରେରଣ କରିଥିଲେ ପ୍ରାଣପ୍ରିୟା ନିକଟକୁ । ବର୍ଷାର ଆଗମନରେ ସମଗ୍ର ପୃଥିବୀରେ ଏଇ ଯେଉଁ ଶିହରଣ, ପୁଲକର ସୃଷ୍ଟିପାତ ତାହା ଗୋଟିଏ ମୁଗ୍ଧ କାଙ୍ଗାଳ ନାରୀ ମନରୁ ବାଦ୍ ଯାଇପାରେ କିପରି ? ଅଶ୍ରୁଟୀକା ଉପନ୍ୟାସର ଘଟଣା ପ୍ରବାହ ଜୁଲାଇ ନ ତାରିଖଠାରୁ ସେପ୍ଟେମ୍ବର ଅଠେଇଶ ତାରିଖ ପର୍ଯ୍ୟନ୍ତ ଡାଏରୀରେ ଲିପିବଦ୍ଧ କରାଯାଇଥିବା କାହାଣୀ ଉପରେ ପରିକଳ୍ପିତ । ଡାଏରୀର ଭିନ୍ନ ପୃଷ୍ଠା ମଧ୍ୟରେ ପ୍ରେମର ନିବିଡ଼ତା, ପ୍ରେମର ସାନ୍ଦ୍ରତା ଓ ପରିକାଷ୍ଠା ଭିତରେ ଅଶ୍ରୁଳ ଆବେଗର ମନୋଜ୍ଞ ପରିପ୍ରକାଶ ହୋଇଛି ଅଶ୍ରୁଟୀକା । ଜୀବନ ମୁକ୍ତିର ପ୍ରତୀକ, ବର୍ଷାଋତୁର ମେଘ ମେଦୁର ଆକାଶ ତଳେ ବିରହିଣୀ ନାୟିକା ଅପେକ୍ଷା କରିଛି ବସନ୍ତର ଆଗମନକୁ । ଯୌବନର ପ୍ରମତ୍ତତାରେ ଜଳ୍ପିତା ନାୟିକା ବାର୍ଦ୍ଧକ୍ୟର ପ୍ରଥମ ପ୍ରତିଛବି ଦେଖିଛି ଶୀତର ଆଗମନରେ । ଜୀବନର ସମସ୍ତ ବ୍ୟର୍ଥତା ଭିତରେ ସାର୍ଥକତା ଖୋଜିବାକୁ ପ୍ରୟାସ କରି ବିଫଳ ହୋଇଛି । କେବଳ ସେତିକି ନୁହେଁ

ଅଶ୍ରୁ ଟୀକା ଉପନ୍ୟାସ ଯନ୍ତ୍ରଣା ଜର୍ଜରିତ ହୃଦପିଣ୍ଡ ଲଭ ସର୍ବକାଳ ଓ୍ୟାର୍ଡର କାନଭାସ ଉପରେ ଚିତ୍ରିତ । ଏଠାରେ ପ୍ରେମ ପାଇଁ ପ୍ରେମିକା ନାରୀ କିମ୍ବା ସ୍ୱପ୍ନ ପାଇଁ ଘର ନାଇ ଅଥବା କେତେ ଖେଳ ପାଇଁ ରାସ୍ତା ନାହିଁ । ଜୀବନର ପକା ଉଠା ପ୍ରବାହ ମଧ୍ୟରେ କେବଳ ଅନ୍ଧକାର ଭିତରେ ଆଲୁଅର ଛୁଟା, ବିରହ ମଧ୍ୟରେ ମିଳନର କ୍ଷୀଣ ଦୃଷ୍ଟି । ‘‘ମରିତେ ଚାହନା ଆମି ସୁନ୍ଦର ଭୁବନେ’’ ଜୀବନ ଥିଲେ ମୃତ୍ୟୁ ଅଛି ତଥାପି ମଣିଷ ପାଗଳ ହୁଏ ପ୍ରେମ ପାଇଁ । କ'ଣ ଏହାର ସ୍ୱରୂପ ଓ ସଜ୍ଞା ଦୁଇଟି ଅକ୍ଷର ବିଶିଷ୍ଟ ଗୋଟିଏ ଶବ୍ଦ ଭିତରେ ଏତେ ଭାଷା, ଏତେ ଦର୍ଶନ, ଏତେ ଯୁକ୍ତି, ଏତେ ପ୍ରଶ୍ନ, ଏତେ ଅଭିମାନ, ଏତେ ଅହଙ୍କାର ଥାଇପାରେ । ଜନମେଶ ବାବୁଙ୍କ ମାନସୀ ନାୟିକା ସନ୍ଧ୍ୟାକୁ ନ ଦେଖିଲେ ଏଇ ବ୍ୟାପ୍ତି ସମ୍ବନ୍ଧରେ ହୃଦ୍‌ବୋଧ କରିହୁଏ ନାହିଁ ।

ନିଜ ଜୀବନର ନଭେଲକୁ ନିଜେ ପଢ଼ିଲବେଳେ ସନ୍ଧ୍ୟା ନିଜକୁ ବନ୍ଧୁ ରୂପରେ ଆବିଷ୍କାର କରିଛି । ଉତ୍ଥାନପତନ ଘଟଣା ବହୁଳ ଜୀବନରେ ସେ ଏକାଧାରରେ ମାତୃଶାଳୀ, ସଜରଖା ଶିକ୍ଷକ, ସଂଗୀତଜ୍ଞ । ସଙ୍ଗୀତର ସୁରେ ସୁରେ ନାଗ୍ରେ ଜୀବନର କୋମଳତା, ନରମତାକୁ ଦୂରେଇ ନ ଦେଇ ସେ ମଧ୍ୟ ସଜିଛି ମାତା, ଭଗିନୀ, ପ୍ରେମିକା, ମଥାରେ ସିନ୍ଦୂର ପିନ୍ଧିନ, ଜୀବନର ପୂର୍ଣ୍ଣତା ଭିତରେ ଅପୂର୍ଣ୍ଣତାର ଗୋଟିଏ ବିଗ୍ରହ । ସବୁ କିଛି ଥାଇ ତା'ର କିଛି ନାହିଁ । ଖାଲି ଗୁଡ଼ାଏ ଯନ୍ତ୍ରଣା । ସମସ୍ତଙ୍କ ଜୀବନର ଯନ୍ତ୍ରଣାକୁ ଆପଣେଇ ନେଇ ହୃଦୟରେ ବାଣ୍ଟୁଛି ଆନନ୍ଦର ମଧୁକଣା । ସେ ଦିବାର ଉଜ୍ଜ୍ୱଳ ଆଲୋକ ନୁହେଁ କିମ୍ବା ରାତିର ଅନ୍ଧକାର ନୁହେଁ ଏକ ମିଶାମିଶି ଫେଣ୍ଟାଫେଣ୍ଟି ରୂପ ସ୍ନିଗ୍ଧତା ଅଛି, ମାଧୁର୍ଯ୍ୟ ଅଛି ଆଉ ବାସ୍ତବିକତା ବି ଅଛି, ଆଖିରେ ଆଖି, ନିଦ୍ରାରେ ସ୍ୱପ୍ନ ଅନ୍ତରରେ ଅନ୍ତରର ମିଶ୍ରଣ କରିବାର ଯୋଗ୍ୟତା ମଧ୍ୟ ଅଛି । କିନ୍ତୁ ଏଇ ଅନନ୍ୟ ସୁନ୍ଦରୀ ମାନଶୀଳା ନାରୀ ରକ୍ତରେ ଉଷ୍ମତା ଓ ମନପ୍ରାଣ ଉଷ୍ମତା ଲାଭ କରିଥିଲେ ମଧ୍ୟ କେବଳ ସମାଜର କଠୋର ଅନୁଶାସନକୁ ଡରି ଯୌବନ ମାଦକ-ଯନ୍ତ୍ରଣା ଅନୁଭବ କରିଛି । ତରଙ୍ଗିଣୀର କରୁଣ ରାଗିଣୀ ଉଦ୍‌ଭ୍ରାନ୍ତ ଉତ୍ଫୁଲ୍ଲ ବାୟୁମଣ୍ଡଳରେ ସୃଷ୍ଟି କରିଛି ଏକ ଅପୂର୍ବ ନିକ୍ୱଣ । ସେଥିପାଇଁ ସନ୍ଧ୍ୟାର ଜୀବନରେ ଦିନର ଆଲୁଅଠୁ ଖୁବ୍ ଅନ୍ଧକାର ଦେଖାଯାଏ ଆଉ ଜୀବନଟା ନିର୍ଜୀବ ପରି ମନେହୁଏ ।

'ଅଶ୍ରୁ ଟୀକା'ର ସଫଳତା ପରେ 'ଘୁମନ୍ତ ମାଳମା'ର ପରିକଳ୍ପନା । ମୁଁ ସେତିକବେଳକୁ ସ୍ଥାନାନ୍ତରିତ । ଶୁଣିଛି ଥରେ ଦୁଇଥର ଉମେଶବାବୁ ଘରକୁ ଆସି ଭଗ୍ନମନ ନେଇ ଫେରିଛନ୍ତି । ମନରେ ଅନେକ ବାସନା, ଆଖିରେ ତାଙ୍କର ଥିଲା ଅନେକ ରଙ୍ଗ ଏବଂ ଘୁମନ୍ତ ମାଳମାକୁ ପ୍ରକାଶ କରିବାର ଦୁର୍ବାର କାମନା । ଏହାକୁ ଚଳଚ୍ଚିତ୍ର କରିବାର ଯୋଜନା ତାଙ୍କର ଏହି ଉଦ୍ଦେଶ୍ୟଟି ଚରିତାର୍ଥ ହୋଇ ପାରିନଥିଲା ତା'ର ଏକମାତ୍ର କାରଣ ହେଉଛି ସେ ଥିଲେ ବହୁମୁଖୀ ପ୍ରତିଭାର ଅଧିକାରୀ । ଏକାଧାରରେ ଜ୍ୟୋତିଷ ଚର୍ଚ୍ଚା ଓ ସେ ସମ୍ପର୍କରେ ନିଜର ଅନୁଚିନ୍ତା ଲିପିବଦ୍ଧ କରିବାର ଉଦ୍ୟମ, ଜୀବନୀ ରଚନା, ଚଳଚ୍ଚିତ୍ର ନିର୍ମାଣ ପ୍ରଭୃତିରେ ବ୍ୟସ୍ତ ରହି ସମ୍ଭବତଃ ତାଙ୍କର ଏହି ଯୋଜନାକୁ ସେ କାର୍ଯ୍ୟକାରୀ କରିପାରି ନଥିଲେ ଅଶ୍ରୁ ଟୀକାର ସନ୍ଧ୍ୟା ସଦୃଶ 'ଘୁମନ୍ତ ମାଳମା'ର ପରିକଳ୍ପନା ମାଳମାର ଜୀବନୀ ଦେବଗଡ଼ୁ । ସେଇ ନାରୀ ଜୀବନର ଆଶା ଆକାଂକ୍ଷା, ପ୍ରେମ ପରାକାଷ୍ଠା ଭିତରେ ଜୀବନାନୁସନ୍ଧାନ ।

ସନ୍ଧ୍ୟାର ଆତ୍ମପ୍ରକାଶ ଘଟିଥିଲା ମେଡ଼ିକାଲ ଫିମେଲ ସର୍ଜିକାଲ ୱାର୍ଡ଼ରେ ଏକ ନଷ୍ଟମାଡ଼ ରୋଗୀ ଭାବରେ । ଜୀବନର ସମସ୍ତ ଆଶା ଆକାଂକ୍ଷା ଆଲୁଅ ଅନ୍ଧାର ହସ ଖୁସି, ଆନନ୍ଦ ବିଷାଦକୁ ପଛରେ ପକାଇ ସିଏ ପୁଣି ଅନନ୍ତ ଅସୀମ ଆକାଶରେ ମିଶିବାରେ ଆକାଂକ୍ଷା ନେଇ ଗତି କରିଛି । ସେ ଯାତ୍ରା ଅନିର୍ଦ୍ଦିଷ୍ଟ, ଅଲକ୍ଷ୍ୟ । ଏହାର ଦୁଇବର୍ଷ ପରେ ହଠାତ୍ ସନ୍ଧ୍ୟାର ଏକ ନବୀକରଣ ରୂପରେ ଆତ୍ମପ୍ରକାଶ କରିଛି ମାଳମା କୋର୍ଟ ପରିସରରେ । ପରିବେଶ ଦୃଷ୍ଟିରୁ ଭିନ୍ନ ବୋଧ ହେଉଥିଲେହେଁ ଆବେଗ ଦୃଷ୍ଟିରୁ ଏହା ସମପର୍ଯ୍ୟାୟବାଚୀ । କେଉଁଠି ଶାରୀରିକ ଯନ୍ତ୍ରଣାର କରୁଣ ଚିତ୍କାର ଶୁଣା ଯାଉଥିଲା ବେଳେ ଅନ୍ୟ କେଉଁଠି ମାନସିକ ଯନ୍ତ୍ରଣାର କ୍ଷତ ବିକ୍ଷତ ରୂପ ଦେଖିବାକୁ ମିଳିଥାଏ । ଉମେଶବାବୁ 'ଘୁମନ୍ତ ମାଳମା' ବହିଟି ଅକ୍ଟୋବର ଛ' ତାରିଖରେ ନେଇ ଗୋପାଳପୁର ଯିବାପାଇଁ ନିମନ୍ତ୍ରଣ କରିଥିଲେ । ସେତିକି ବେଳେ ତାଙ୍କର କାର୍ଯ୍ୟସ୍ଥଳ ସମ୍ଭବତଃ ଥିଲା ଗୋପାଳପୁର । ଗୋପାଳପୁରର ଶାନ୍ତ ସ୍ନିଗ୍ଧ ବେଳାଭୂମିରେ ଉମେଶବାବୁଙ୍କ ସହିତ କେତୋଟି ମୁହୂର୍ତ୍ତ ଅତିବାହିତ କରିବାର ବାସନାକୁ ଏଡ଼ି ଦେଇ ହେଲାନାହିଁ । ତାଙ୍କର ନିମନ୍ତ୍ରଣ

ଉଷା କରି ଗଲା ସିନା ମନରେ ଥିଲା ଅସୁମାରି ପ୍ରଶ୍ନ । ହଠାତ୍ କିନ୍ତୁ ଉମେଶବାବୁ କଥାଟାକୁ ହାଲୁକା କରି ସାଗର ଆଉ ମାଳମା ଏ ଉଭୟ ପରସ୍ପର ଅଙ୍ଗାଙ୍ଗୀ ଭାବେ ଜଡ଼ିତ । ଜଣକୁ ବାଦ ଦେଇ ଆଉଜଣେ ରହି-ପାରେ ନାଇ । ଏଇଥି ନା" ଉମେଶବାବୁ ଏଥିରକ ଥିଲେ ପ୍ରଗଲ୍ଭ ମନରେ ତାଙ୍କର ଭୟ ନ ଥିଲା ପାଠକୀୟ ମନ୍ତବ୍ୟ ପ୍ରତି କିମ୍ବା ସମାଲୋଚନା ଶାଣିତ କଟୁସ୍ୱ ପ୍ରତି । ତାଙ୍କ ଦୃଷ୍ଟିରେ ମାଳମା ଥିଲା ଏକ ସଦ୍ୟସ୍ନାତ କଳିକା ମୁଁ ସେତିକବେଳେ ଲେଖକୀୟ ବେଦନାବୋଧକୁ ଗ୍ରହଣ କରି ଚିନ୍ତା କରୁଥିଲି ପ୍ରଥମ ବହିର ପାଣ୍ଡୁଲିପିରୁ କିଛି ଅଂଶ ବାଦ ଦେଇ ମୁଁ ଯେଉଁ ପାରିଲାପଣ ଦେଖାଇ ଥିଲି ଏହା ଥିଲା ସମ୍ଭବତଃ ତାଙ୍କ ପ୍ରତି ଏକ ଦାରୁଣ ଆଘାତ । ଏହି ଭାବଟିକୁ ତାଙ୍କ ଆଗରେ ପ୍ରକାଶ କରିଦେଲା ପରେ ସେ ଅତ୍ୟନ୍ତ ଚିନ୍ତିତ, ଗମ୍ଭୀର ଓ ନିଜକୁ ନିଜେ ସଂକୁଚିତ ହୋଇ ଲଜ୍ଜିତ ହେବା ଭଙ୍ଗୀରେ ପ୍ରକାଶ କଲେ ଛି ! ଛି ! ଆପଣ ଏମିତି କାହିଁକି ଭାବୁଛନ୍ତି । ମୁଁ କେବଳ ସମୁଦ୍ରର ବେଳାଭୂମିରେ ସାଗରକୁ ଦେଖିଛି, ସାଗରର ଗାଢ଼ ନୀଳ ରଙ୍ଗକୁ ଦେଖିଛି ସେମାନଙ୍କର ଜୀବନର ଜୀବନଧାରାକୁ । କେତେ ନିବିଡ଼ ଭାବରେ ସେମାନେ ଆପଣେଇ ନେଇଛନ୍ତି ପରସ୍ପରକୁ । ଉମେଶବାବୁଙ୍କ ଚିନ୍ତାଧାରାରେ ଉଦ୍ଭାସିତ ହେଉଥିବା ପ୍ରାପ୍ତିକୁ ମୋର ସଶ୍ରଦ୍ଧ ନିବେଦନ ଜଣାଇଲି ଏହାପରେ 'ଘୁମନ୍ତ ମାଳମା' ସଂପର୍କରେ ଆମର ଅନେକ ଆଲୋଚନା ।

ମାଳମା ଘରର ଅଲିଅଳି ଝିଅ ଭଳି ଥିଲା ଘୁମନ୍ତ । ଜୀବନରୁ ବସନ୍ତର ଦାଗଟା ସଂପୂର୍ଣ୍ଣ ଅପସରି ନ ଯାଉଣୁ ସେ ପୁଣିଥରେ ନାରୀର ଗୌରବ ଟିକକ ଲାଭ କରିବା ବାସନା ନେଇ ଘର ଛାଡ଼ୁଛି । ବ୍ୟତିକ୍ରମ ଜୀବନରେ ସାମାନ୍ୟ ଟିକିଏ ଭୁଲ କରି ବାଲ୍ୟଜୀବନ ତଳେ ଯୌବନଟାକୁ ଘୁମନ୍ତ ଅବସ୍ଥାରେ ଛାଡ଼ି ଦେଇଥିଲା ମାଳମା ଆଉ ସେଇ ଘୁମନ୍ତ ଯୌବନ ଭିତରେ ସ୍ୱପ୍ନ ଦେଖୁ ଦେଖୁ ଅନେକ ଭୁଲ ବୁଝାବଣା ସୃଷ୍ଟି ହୋଇଛି । ଯୌବନ ଜାଗ୍ରତ ହେଲାବେଳକୁ ଅନ୍ୟ ଜଣେ ସିଂହାସନଟା ଦଖଲ କରିନେଇଛି । ପୁଣି ଭୁଲବୁଝାମଣାର ଘନଘଟା । କିନ୍ତୁ ପ୍ରେମ ହେଉଛି ଅବ୍ୟକ୍ତ ଅକ୍ଷୟ, ଅମର ଅବିନାଶୀ ସାଗର ଓ ମାଳମାଙ୍କର ବୈବାହିକ ସମ୍ବନ୍ଧ ସ୍ଥାପିତ

ହୋଇ ନଥିଲେହେଁ ସେମାନଙ୍କର ପ୍ରେମ ଥିଲ ସୁନ୍ଦର । ସାଗର ଓ ବାସନ୍ତୀଙ୍କ ବିବାହ ବନ୍ଧନ ଥିଲ ଲୌକିକ । ବୈବାହିକ ଜୀବନଧାରାରେ ଶାଶ୍ୱତ ମୂଲ୍ୟବୋଧ ଠିକକ ଖୋଜିଲ ବେଳେ ସାଗର ଓ ମାଳମାର ନିବିଡ଼ତା ଉପଲବ୍ଧି କରି ବାସନ୍ତୀ ନିଜକୁ ଦୂରେଇ ନେଇଛୁ ଦିଓଟି ପ୍ରେମୀ ହୃଦୟର ମିଳନାକାଂକ୍ଷାକୁ ଚରିତାର୍ଥ କରିବାର ବାସନା । ଯୌବନ ଅତିକ୍ରାନ୍ତ, ବୟସ ଅତିକ୍ରାନ୍ତ ତଥାପି ପ୍ରେମର ପରାକାଷ୍ଠା ଓ ମୂଲ୍ୟବୋଧ ପ୍ରତି ଏହା ବାସନ୍ତୀର ଥିଲ ଶ୍ରେଷ୍ଠ ସମ୍ମାନ । ହୁଏତ ତାର ଜୀବନରେ ସେ ନିଜର ଆକାଂକ୍ଷା ପୂରଣ କରିବ । ନାରୀ ଜୀବନର ମହମାମୟ ତ୍ୟାଗ, ଆଦର୍ଶ ଓ ପ୍ରେମର ପରାକାଷ୍ଠ ପ୍ରଦର୍ଶନ ଥିଲ ଉପନ୍ୟାସର ମୁଖ୍ୟ ଉଦ୍ଦେଶ୍ୟ ।

ଅନ୍ୟାନ୍ୟ ଅନେକ ଓଡ଼ିଆ ଉପନ୍ୟାସ ସଦୃଶ ଉମେଶବାବୁଙ୍କ ଉପନ୍ୟାସର ଘଟଣା ପ୍ରବାହ ପର ବା ତାଏର ଦ୍ୱାରା 'ନିୟନ୍ତ୍ରିତ' ଏହା ଅପେକ୍ଷାକୃତ ଏକ ସହଜସାଧ୍ୟ ଶୈଳୀ ଭାବରେ ବିବେଚିତ ହୋଇଥିଲେହେଁ ଘଟଣାକୁ ଉପଲବ୍ଧି କରିବା ଅଥବା ଚରିତ୍ର ମନ ଭିତରର ଚିନ୍ତା ଚେତନା ଓ ଘଟଣା ପ୍ରବାହକୁ ପ୍ରକାଶ କରିବାରେ ଅଧିକ ପ୍ରକାଶକ୍ଷମ ହୋଇଥାଏ । ନିଜର କଳାକୃତିକୁ ଅଧିକ ବିଶ୍ୱାସ୍ୟ; ହୃଦ୍ୟ ଓ ଗ୍ରାହ୍ୟ କରିବା ପାଇଁ ଲେଖକ ଏହାକୁ ବାଦ୍ ଦେଇନାହାନ୍ତି । ଯାହା ପ୍ରକାଶ କରାଯାଇ ନ ପାରେ ତାକୁ ଲିପିବଦ୍ଧ କରିଦେଲେ ମନୋରାଜ୍ୟରେ ରହିଥିବା ବେଦନା ଅନେକାଂଶରେ ଲଘବ ହୋଇଯାଏ ଏହାହିଁ ଥିଲ ଲେଖକଙ୍କର ବିଶ୍ୱାସ ।

ବହୁ ଅନ୍ତରଙ୍ଗ ମୁହୂର୍ତ୍ତ ଉମେଶବାବୁଙ୍କ ସହିତ ଅତିକ୍ରାନ୍ତ ହୋଇଛି । କେତେବେଳେ ଡାକବଙ୍ଗଳାରେ, କେତେବେଳେ ସମୁଦ୍ର ବେଳାଭୂମିରେ ତ ଅନ୍ୟ କେତେବେଳେ ବହି ଦୋକାନର ସରୁ ବେଞ୍ଚ୍ ଉପରେ । ଶାଶ୍ୱତ ଅନୁଚିନ୍ତା, ସାମାଜିକ ମୂଲ୍ୟବୋଧ ଭିତ୍ତିକ ଦୃଷ୍ଟିକୋଣ ଓ ଭାଷାଗତ ସ୍ୱଚ୍ଛତା ଆଦି ବହୁ ଆଳାପ ଆଲୋଚନା ଭିତରେ ସେଇ ଉଜ୍ଜ୍ୱଳ ବ୍ୟକ୍ତିତ୍ୱଟି ଏବେବି ମାନସ ପଟରେ ଦଣ୍ଡାୟମାନ । ସେଇ ଆତ୍ମାର ସଦ୍‌ଗତି ହେଉ ଏହାହିଁ କାମନା ।

ଡ଼. ବ୍ରହ୍ମାନନ୍ଦ ସିଂହ
ମୁଖ୍ୟ ଅଧ୍ୟାପକ, ଓଡ଼ିଆ ବିଭାଗ
ଖଲ୍ଲିକୋଟ ମହାବିଦ୍ୟାଳୟ (ସ୍ୱୟଂଶାସିତ)

# ଅନନ୍ତ ନୀଳିମାରେ ହଜିଯାଇଥିବା ଔପନ୍ୟାସିକ ଉମେଶ ଚରଣ ଓ 'ଘୁମନ୍ତ ନୀଳିମା'

ସମ୍ପ୍ରତି ଓଡ଼ିଆ ଉପନ୍ୟାସ ସମ୍ପର୍କରେ ଅଭିଯୋଗଟିଏ ଶୁଣାଯାଏ । ତାହା ହେଲା,—"ଗତ କିଛି ବର୍ଷ ହେବ ଓଡ଼ିଆରେ ଖଣ୍ଡେ ଭଲ ଉପନ୍ୟାସ ରଚନା ହୋଇନାହିଁ ।" ଭଲ ଓ ମନ୍ଦ ଦୁଇଟି ଆପେକ୍ଷିକ ଶବ୍ଦ । ସ୍ଥାନ, କାଳ, ପାତ୍ର ଭେଦରେ ତା'ର ସଂଜ୍ଞା ଓ ସ୍ୱରୂପ ବଦଳିବାକୁ ବାଧ୍ୟ । ତେଣୁ ଉକ୍ତ ଅଭିଯୋଗର ଖଣ୍ଡନ ବା ମଣ୍ଡନର ଆବଶ୍ୟକତାହିଁ ନାହିଁ । କିନ୍ତୁ 'ଘୁମନ୍ତ ନୀଳିମା' ବର୍ତ୍ତମାନ କାଳର ଏକ ଉପନ୍ୟାସ ହୋଇଥିବା ଯୋଗୁଁ ଏବଂ ଏହାର ଆଲୋଚନା ଆମର ଉଦ୍ଦେଶ୍ୟ ଥିବା ଯୋଗୁଁ ଏ ବିଷୟରେ ଆଉ ପଦେ କହିଦେବା ଯଥାର୍ଥ ମନେହୁଏ । ବର୍ତ୍ତମାନ ସମୟର ସାହିତ୍ୟରେ କବିଙ୍କ ସଂଖ୍ୟା ଯେଉଁ ମାତ୍ରାରେ ବଢ଼ି ଚାଲିଛି, କବିତାର ପାଠକ ସଂଖ୍ୟା ସେହି ପରିମାଣରେ ହ୍ରାସ ପାଇବାରେ ଲାଗିଛି । ତା'ର କାରଣ ହୋଇପାରେ କବିତା ତାର ସ୍ୱାଭାବିକତାକୁ ଓ ସାମାଜିକ ପ୍ରାସଙ୍ଗିକତାକୁ ହରାଇ ବସିଛି । ସୁଖର କଥା ବର୍ତ୍ତମାନର ଉପନ୍ୟାସ ଏଇ ଦୁଇଟି କାରଣରୁ ତାର ପାଠକ ସମାଜ ବୃଦ୍ଧି କରି ଚାଲିବା ସାଥେ ସାଥେ ପାଠକର ଚାହିଦା ଅନୁଯାୟୀ ପ୍ରତିବର୍ଷ ବେଶ୍ କିଛି ପରିମାଣରେ ଉପନ୍ୟାସ ପ୍ରକାଶ ପାଉଛି । ସେଥିରୁ ସବୁଗୁଡ଼ିକ ରଚନା ଯେ 'କ୍ଲାସିକ' ପର୍ଯ୍ୟାୟର ହେବ ବା କାଳଜୟୀ ହେବ, ତାହା ଆଶାକରିବା ବୃଥା । ସେଥିରୁ ଯେଉଁଗୁଡ଼ିକର ବଂଚିବାର ନିଜସ୍ୱ ଶକ୍ତି ନଥାଏ ସେମାନେ ମରିହଜି ଯାଆନ୍ତି । କିନ୍ତୁ ଅନ୍ୟ କେତୋଟି ସୃଷ୍ଟି ସ୍ୱଶକ୍ତି ବଳରେ କେବଳ ଯେ ବଂଚି ରହନ୍ତି ତାହାନୁହଁ, ପାଠକର ଆଦର ଓ ଆଗ୍ରହ ପାଇ ପୁନଃ ଶକ୍ତି ସଂଗ୍ରହ କରି ଅଧିକ ସୁସ୍ଥ ଓ ସତେଜ ହୋଇ ବିକାଶ ଲାଭ କରନ୍ତି । ୧୯୯୭ ସାଲରେ 'ଘୁମନ୍ତ ନୀଳିମା'ର ପରିବର୍ଦ୍ଧିତ ଓ ପରିମାର୍ଜିତ ଦ୍ୱିତୀୟ ସଂସ୍କରଣର ପ୍ରକାଶନ ଏହାର ଶକ୍ତି, ସାମର୍ଥ୍ୟ ଓ ସଫଳତାର ପରିଚୟ ଦିଏ ।

ଉକ୍ତ ଉପନ୍ୟାସର ସ୍ରଷ୍ଟା ଉମେଶ ଚରଣ (ଉମେଶ ଚରଣ ପାଣ୍ଡୀ) ବୃତ୍ତିରେ ଥିଲେ ଇଂଜିନିୟର କିନ୍ତୁ ରୁଚିରେ ଜଣେ ସାହିତ୍ୟିକ । ସାହିତ୍ୟିକ ଭାବରେ ତାଙ୍କ ପ୍ରତିଭା ଥିଲା ବହୁମୁଖୀ । ସେ ଏକାଧାରରେ ଜଣେ କବି, ଗାଳ୍ପିକ, ପ୍ରବନ୍ଧିକ, ନାଟ୍ୟକାର, ଜୀବନଚରିତର ସ୍ରଷ୍ଟା, ଚଳଚ୍ଚିତ୍ରର ସଂଳାପ ଲେଖକ ଏବଂ ସର୍ବୋପରି ଜଣେ ଅତିଉଚ୍ଚକୋଟୀର ଔପନ୍ୟାସିକ । ବର୍ତ୍ତମାନ ସୁଦ୍ଧା ତାଙ୍କର କେତୋଟି ଅପ୍ରକାଶିତ ଉପନ୍ୟାସକୁ ଛାଡ଼ିଦେଲେ, ପ୍ରକାଶିତ ଦୁଇ ଉପନ୍ୟାସ ରହିଛି । ପ୍ରତ୍ୟେକଟି ତାଙ୍କର ନିଜସ୍ୱ ବଳିଷ୍ଠ ସାଧନା ଓ ସିଦ୍ଧିର ସଙ୍କେତ ବହନ କରିଥାଏ । ବିଶେଷକରି ଆଲୋଚ୍ୟ ଉପନ୍ୟାସ 'ଧୂମ୍ର ମଳମା'ର ଜ୍ୟୋତିର୍ମୟୀ ମଳମାରେ ତାଙ୍କର ବର୍ଣ୍ଣାଢ୍ୟ ସାହିତ୍ୟିକ ଜୀବନ ଭାସ୍ୱର ।

ଉପନ୍ୟାସର ପ୍ରାରମ୍ଭରେ ଲେଖକ ଉପନ୍ୟାସ ଅନ୍ତର୍ଭୁକ୍ତ ଚରିତ୍ରମାନଙ୍କ ସମ୍ପର୍କରେ ଏକ କୈଫିୟତ ଦେଇଛନ୍ତି । ତାହା ହେଲା ଏଥିର ସମସ୍ତ ଚରିତ୍ର କାଳ୍ପନିକ । ଯଦି କାହାର ବ୍ୟକ୍ତିଗତ ଚରିତ୍ର ସହିତ କାହାର କିଛି ସାମଂଜସ୍ୟ ଥାଏ, ତେବେ ସେ ସେଥିପାଇଁ ଦାୟୀ ନୁହନ୍ତି । ଏହାରି ଦ୍ୱାରା ସେ ପ୍ରକୃତ ସତ୍ୟକୁ ଯେତିକି ଲୁଚାଇବା ପାଇଁ ଚେଷ୍ଟା କରିଛନ୍ତି, ସତ୍ୟ ସେତିକି ଉଦ୍‌ଭାସିତ ହୋଇଛି । ଅର୍ଥାତ ଉପନ୍ୟାସର ସ୍ଥାନବିଶେଷରେ ଘଟଣା, ଚରିତ୍ର, ପରିବେଶ, ସମସ୍ୟା ଓ ତାର ସମାଧାନ ଏତେ ନିଖୁଣ ହୋଇଛି ଯେ, ତାହା ବାସ୍ତବତାର ଭ୍ରମ ସୃଷ୍ଟି କରିଥାଏ । ଏହାର ପୃଷ୍ଠ-ଭୂମିରେ ସେହିଭଳି କିଛି ସତ୍ୟଘଟଣା ନଥିଲେ, ତାର ଚିତ୍ରଣ ଏତେ ଜୀବନ୍ତ ହେବା ସମ୍ଭବ ନୁହେଁ । ଅନେକ କ୍ଷେତ୍ରରେ ଔପନ୍ୟାସିକ ଏକ ବାସ୍ତବ ଘଟଣା ଉପରେ ନିଜସ୍ୱ କଳ୍ପନାର ରଂଗ ଦେଇଥାଏ । ଯେଉଁଠାରେ ବାସ୍ତବତା ଓ କଳ୍ପନା ଜଳର ଦ୍ରବଣ ଭଳି ଯେତିକି ନିଜସ୍ୱ ଗୁଣ-ଧର୍ମ ହରାଇ ଅନ୍ୟଏକ ରୂପ ନିଅନ୍ତି ଔପନ୍ୟାସିକ ସେତିକି ସିଦ୍ଧି ଓ ସଫଳତା ଲାଭ କରିଥାଏ । ଏହାକୁ ଉକ୍ତ ଉପନ୍ୟାସଟି କ୍ଷେତ୍ରରେ ସତ୍ୟତା ଭାବେ ଘଟିଥିବା କଥା ଅନୁମାନ କରିବାରେ କଷ୍ଟ ହୁଏନାହିଁ ।

ଉପନ୍ୟାସଟିର ଆଖ୍ୟାନ-ଭାଗ କଲେଜ ଜୀବନର ଏକ ଗତାନୁ-ଗତିକ ରୋମାଣ୍ଟିକ ପ୍ରେମ-କାହାଣୀର ଆଧାରରେ ବିକଶିତ । ଉପନ୍ୟାସର ନାୟକ ସାଗର ଓ ନାୟିକା ମଳମା । ଉପନ୍ୟାସର ନାମକରଣ ସହ ଏହାର ମଝିରେ ଥିବା ଗୋଟିଏ ଧାଡ଼ିକୁ ମିଶାଇ ପଢି ଦେଲେ କାହାଣୀ (Plot) ଟିକୁ

ବେଶ୍ ଅନୁମାନ କରିହୁଏ । ଯଥା ତିନୋଟି ହେଲା,—"ଦିନା ସାଗରରେ ମାଳମାର ବିକାଶ ଅସମ୍ଭବ । ପ୍ରତିଫଳନ ନାହିଁ । ନାହିଁ ମଧ୍ୟ ପ୍ରତିସରଣ ।" (ପୃ ୧୯୭) ସାଗର ଓ ମାଳମା ଜୀବନର ପ୍ରେମ, ମିଳନ ଓ ବିରହକୁ ନେଇ ଏହାର କାହାଣୀ ଗତିଛି ଯେ କଳ୍ପିତ ଏବଂ ଗଡ଼ମୁଖର ଏହା ଅନୁମାନ କରିବାରେ କଷ୍ଟ ହୁଏ ନାହିଁ । କିନ୍ତୁ ଆଲୋଚନାର ଆବଶ୍ୟକତା ଦୃଷ୍ଟିରୁ ଆଖ୍ୟାନ ଭାଗକୁ ଏଠି ସଂକ୍ଷେପରେ ଉଲ୍ଲେଖ କରାଯାଇପାରେ ।

ଉପନ୍ୟାସ ନାୟିକା ମାଳମାର ବାପା ଥିଲେ ଜଣେ ସରକାରୀ କର୍ମଚାରୀ । ସେ ନିଜ ପରିବାରକୁ ସର୍ବଦା ଗାଁରେ ଛାଡ଼ିଦେଇଥିଲେ । ମାଳମା ଗାଁ ସ୍କୁଲରେ ପଢ଼ି ହାଇସ୍କୁଲ ଶ୍ରେଣୀରେ ମାଟ୍ରିକ ପାଶ କରେ । ସେତେବେଳକୁ ତା ଭାଇ ବିଜୁ ସହର କଲେଜର ବି.ଏସ ସି.ର ଛାତ୍ର ଏବଂ ବାପାଙ୍କର ମଧ୍ୟ 'ଟ୍ରାନ୍ସଫରମେଣ୍ଟ' ହୋଇଯାଏ । ମାଳମାର କଲେଜ ଶିକ୍ଷା ଦୃଷ୍ଟିରୁ ସମସ୍ତେ ସହରକୁ ଆସି ଘରଭଡ଼ା ନେଇ ରହନ୍ତି । କଲେଜରେ 'ଜଏନ' କରିବା ପାଇଁ ବାପା ଓ ଭାଇଙ୍କ ସହିତ ଯିବା ଅବସରରେ ମାଳମାର ସାକ୍ଷାତ ହୁଏ ଭାଇ ବିଜୁର ଅନ୍ତରଂଗ ବନ୍ଧୁ ସାଗର ସହିତ । ପରସ୍ପରର ପରିଚୟ ପରେ ପ୍ରଥମ ଦେଖାରେ ହିଁ ଏକ ଚୁମ୍ବକୀୟ ଆକର୍ଷଣରେ ପରସ୍ପର ପ୍ରତି ହୁଅନ୍ତି ଆକୃଷ୍ଟ । ଭାଇ ବିଜୁ ସହିତ ସାଗରର ଅନ୍ତରଂଗ ବନ୍ଧୁତା ସୁଯୋଗ ସୃଷ୍ଟି କରେ ଉଭୟଙ୍କର ବାରମ୍ବାର ସାକ୍ଷାତ ଓ ମିଳନ ପାଇଁ । ପୂର୍ବର ଚୁମ୍ବକୀୟ ଆକର୍ଷଣ ପରବର୍ତ୍ତୀ ପର୍ଯ୍ୟାୟରେ ପ୍ରେମ ବା ଭଲପାଇବାରେ ରୂପ ନିଏ । ଏହା ମାନସିକ ସ୍ତରର ପରିସୀମାରେ ସୀମିତ ନରହି ଦେହଜ ମିଳନ ଓ କାମନା ଆଡ଼କୁ ଅଗ୍ରସର ହୁଏ ସାଗର ହାତ । କିନ୍ତୁ ମାଳମା ଏ କ୍ଷେତ୍ରରେ ସାଗରକୁ ଏକ ନିର୍ଦ୍ଦିଷ୍ଟ ସୀମା ପର୍ଯ୍ୟନ୍ତ ମାତ୍ର ସୁଯୋଗ ଦିଏ ଏବଂ ଆଗକୁ ବଢ଼ିବାରେ ଯଥାସମ୍ଭବ ପ୍ରତିବନ୍ଧକ ସୃଷ୍ଟି କରେ । ଘଟଣା କ୍ରମରେ ନିଜ ପିତାମାତାଙ୍କ ଦାରୁଣ ଅସୁସ୍ଥତା ଫଳରେ ସାଗରର ବିବାହ ଅନିବାର୍ଯ୍ୟ ଓ ଆସନ୍ନ ହୋଇଉଠେ । ସେ ଚାହେଁ ମାଳମା ଠାରୁ ବିବାହର ପ୍ରତିଶ୍ରୁତି ଏବଂ ଏକ ନିର୍ଭର ଉତ୍ତର । ଏହିଭଳି ସମ୍ମତି ସୂଚକ ଉତ୍ତର ପାଇଁ ବାରଂବାର ଦାବି କରିବା ଫଳରେ ମାଳମା ସ୍ପଷ୍ଟ ଉତ୍ତର ଦିଏ ଯେ, ସେ ଏଥିପାଇଁ ଅସମର୍ଥ ଏବଂ ଏହି ଅସମର୍ଥତା ପାଇଁ ଅଯୋଗ୍ୟତା ହିଁ ଦାୟୀ । ଲେଖକ ଏହି 'ଅଯୋଗ୍ୟ' ଶବ୍ଦଟିକୁ ଖୁବ୍ ଚତୁରତାର ସହିତ ବ୍ୟବହାର କରିଛନ୍ତି । ଏହି ଶବ୍ଦଟି ଭିତରେ ଉପନ୍ୟାସର ସମସ୍ତ ଦ୍ୱନ୍ଦ୍ୱ କଳ୍ପିତ ଏବଂ ଏହାର ଆଧାରରେ ଉପନ୍ୟାସର ପରବର୍ତ୍ତୀ ଘଟଣାର ଧାରା ପ୍ରବାହିତ । ମାଳମା ହାତ

ଉଚ୍ଛୃଙ୍ଖଳ ଏବଂ ଅଯୋଗ୍ୟତାକୁ ନିଜର ଅଯୋଗ୍ୟତା ବୋଲି ସାଗର ମନେ-କରେ । ଖୁବ୍ ଉତ୍କ୍ଷିପ୍ତ ହୋଇଯାଏ ଏବଂ ମାଳମା ସହିତ ତାର ସମସ୍ତ ସମ୍ପର୍କ ଛିନ୍ନ କରିବାର ପ୍ରତିଜ୍ଞା ନେଇ ଫେରିଯାଏ । ପରେ ବାସନ୍ତୀ ସହିତ ହୁଏ ସାଗରର ବିବାହ । କିନ୍ତୁ ମାଳମାର ଉଚ୍ଛୃଙ୍ଖଳ 'ଅଯୋଗ୍ୟତା' ନଥିଲି ସାଗର ଉଦ୍ଦେଶ୍ୟରେ, ଥିଲି ତାର ନିଜ ଅଯୋଗ୍ୟତା ସମ୍ପର୍କରେ । ଅର୍ଥାତ୍ ନିଜର ପରିପୂର୍ଣ୍ଣ ଶାରୀରିକ ବିକାଶ, ଅନୁପମ ତନୁ ସୌନ୍ଦର୍ଯ୍ୟ ଓ କାନ୍ତି ସତ୍ତ୍ୱେ ସେ ସେତେବେଳେ ଯାଏ ଥିଲି ଅପ୍ରାପ୍ତ ଯୌବନା । ଶାରୀରିକ ମିଳନ ପାଇଁ ଅନ୍ତରରେ ଅଦମନୀୟ କ୍ଷୁଧା ଥିବା ସତ୍ତ୍ୱେ ସେ ଥିଲି ସେଥିପାଇଁ ଅଯୋଗ୍ୟା, ଅସାମର୍ଥା । ଫଳରେ ବିବାହ ପାଇଁ ମଧ୍ୟ ସେ ଥିଲି ଅଯୋଗ୍ୟା । ସାଗରର ପ୍ରେମ ଓ ଭଲପାଇବା ନିକଟରେ ସେ ନିଜକୁ ସମ୍ପୂର୍ଣ୍ଣ ସମର୍ପଣ କରିଦେଇଥିଲେ ମଧ୍ୟ ଏହି ଅଭାବକୁ ସାଗର ନିକଟରେ ପ୍ରକାଶ କରିବା ପାଇଁ ସେ ଥିଲି ଭୀତା, ସଂକୁଚିତା । ସେଥିପାଇଁ ନିଜକୁ ଖୁବ୍ ଅପମାନିତ ମନେ-କରୁଥିଲି । ଏହାହିଁ ଉପନ୍ୟାସର ରହସ୍ୟ ବିନ୍ଦୁ ଓ ଭାବ କେନ୍ଦ୍ର ।

ସେଦିନର ଅପମାନିତ ସାଗର ମାଳମା ସହିତ ଥିବା ସମସ୍ତ ସମ୍ପର୍କକୁ ଛିନ୍ନ କରିବାର ପ୍ରତିଜ୍ଞା କରି ବାସନ୍ତୀକୁ ବିବାହ କରିଥିଲେ ମଧ୍ୟ ତାର ବୈବାହିକ ଜୀବନରେ ମାଳମାର ପ୍ରେମ ସର୍ବଦା ଏକ 'ଧୂମନ୍ତ ମାଳମା' ଭଳି ଆଚ୍ଛନ୍ନ ହୋଇ ରହିଥିଲି । ଫଳରେ ତାର ଦାମ୍ପତ୍ୟ ଜୀବନ ହୋଇ ପଡ଼ିଥିଲି ବିଫଳ ଓ ଦୁର୍ବିସହ । ବାସନ୍ତୀ ଏହିଭଳି ଏକ ଭାରାକ୍ରାନ୍ତ ଦାମ୍ପତ୍ୟ ଜୀବନରୁ ମୁକ୍ତିପାଇଁ ପଥ ଖୋଜେ । ସାଗରର କଲେଜ ଜୀବନର ବନ୍ଧୁ ତଥା ମାଳମାର ଭାଇ, ବର୍ତ୍ତମାନର ଡାକ୍ତର ବିଜୁ ନିକଟରେ ପହଞ୍ଚେ । ବାସନ୍ତୀର ଅନୁରୋଧରେ ବାସନ୍ତୀ କୁଷ୍ଠରୋଗଗ୍ରସ୍ତା ବୋଲି ବିଜୁ ଜାଲ୍ ମେଡ଼ିକାଲ୍ ସାର୍ଟିଫିକେଟ ଦିଏ । ଏହାରି ଭିତ୍ତିରେ ବାସନ୍ତୀ କୋର୍ଟରେ ଛାଡ଼ପତ୍ର ବ୍ୟବସ୍ଥା କରି ସେହି କୁଷ୍ଠାଶ୍ରମରେ ସେବିକା ଭାବରେ ନିଯୁକ୍ତ ରହେ ।

ସାଗରର ବିବାହ ପରେ ମାଳମା ମଧ୍ୟ ଅଧିକ ଭାଙ୍ଗିପଡ଼େ । ଜୀବନରେ ବିବାହ ନକରି ଚିର କୁମାରୀତ୍ୱକୁ ବରଣ କରିବାର ପ୍ରତିଜ୍ଞା ନେଇ ଓକିଲାତି ପଢ଼େ ଓ ସ୍ୱାଧୀନ ଆଇନ ବ୍ୟବସାୟରେ ଅବତୀର୍ଣ୍ଣ ହୁଏ । ସେ ହୁଏ ଜଣେ ସଫଳ ଆଇନଜୀବୀ । ପରେ ସେ ରାଜନୀତିରେ ପ୍ରବେଶ କରି ବିଧାନସଭା ପାଇଁ ଭୋଟ ଲଢ଼େଇରେ ଯୋଗଦିଏ । ଏହାରି ଭିତରେ

ହୋଇଯାଇ ସାଗରକୁ ଭୁଲିଯିବାର ଶତଚେଷ୍ଟା କରିଥିଲେ ମଧ୍ୟ ତାର ପ୍ରାଣ ସର୍ବଦା ସାଗରର ସ୍ମୃତି ପାଖରେ ଘୂରି ବୁଲୁଥାଏ ଏବଂ ସମୟ, ସୁଯୋଗ ନେଇ ଉଭୟଙ୍କ ମଧ୍ୟରେ ବନ୍ଧୁ ପ୍ରେମପତ୍ରର ଆଦାନ ପ୍ରଦାନ ଓ ଗୋପନ ମିଳନ ଚାଲିଥାଏ । ନିଜର ଭଗ୍ନ ଦାମ୍ପତ୍ୟ ଜୀବନ ଓ ବ୍ୟର୍ଥ ପ୍ରଣୟର ଆଘାତରେ ସାଗର କିଛି ପରିମାଣରେ ନିଜର ମାନସିକ ଭାରସାମ୍ୟ ହରାଏ, ଏହାର ସୁଯୋଗ ନେଇ ବି.ଡି.ଓ. ସାଗରର ତଳିଆ କର୍ମଚାରୀମାନେ ନାନା ଦୁର୍ନୀତିରେ ଲିପ୍ତ ରହି ତାରି ମୁଣ୍ଡରେ ବୋଝ ଲଦି ଦିଅନ୍ତି । ଏଥିରେ ଉପନ୍ୟାସର ଖଳନାୟକ ପୋଲିସ ଇନ୍‌ସପେକ୍ଟର ସଗ୍ରେଜ ସହଯୋଗ କରି ସାଗରକୁ ଜେଲ୍ ପଠାଇଦିଏ । ଓକିଲ ମାଳତୀର ଅକ୍ଲାନ୍ତ ଚେଷ୍ଟା ଓ ରାଜନୀତିକ ପ୍ରଭାବରେ ଶେଷରେ ସାଗର ଜେଲ୍‌ରୁ ମୁକ୍ତ ପାଏ । ସାଗର ଓ ମାଳତୀର ପ୍ରେମର ଗଭୀରତା ଓ ଅନାବିଳତାରେ ଅଭିଭୂତା ବାସନ୍ତୀ ସେମାନଙ୍କ ପୁନର୍ମିଳନ ପଥକୁ ସରସ, ସୁନ୍ଦର ଓ ନିଷ୍କଣ୍ଟକ କରିବାପାଇଁ ସେମାନଙ୍କ ପ୍ରଣୟ ପରିଧିରୁ ଦୂରେଇଯାଇ ଚାଲିଯାଇଥିଲେ ସୁଦୂର ସୁଇଜରଲାଣ୍ଡ ଉଚ୍ଚତର ସେବିକା ତାଲିମ ପାଇଁ ।

ମୋଟାମୋଟି ଭାବେ ଏହାହିଁ ହେଲା ଉପନ୍ୟାସର ଆଖ୍ୟାନ ଭାଗ । ଏହି ଗୋଟିଏ ଆଖ୍ୟାନ ଭାଗକୁ ନେଇ ଏହା ଆରମ୍ଭରୁ ଶେଷଯାଏ ଗତିମୁଖର । ଫଳରେ ଏହାକୁ 'ଏକ ଆଖ୍ୟାନଭାଗ ବିଶିଷ୍ଟ ଉପନ୍ୟାସ' (Novel of single plot) ଭାବରେ ଗ୍ରହଣ କରାଯାଇପାରେ । ଏପରି ଉପନ୍ୟାସର ଏକ ଦୁର୍ବଳତା ରହିଛି । ଏହିଭଳି ଉପନ୍ୟାସରେ ଘଟଣାର ବୈଚିତ୍ର୍ୟ ଓ ଘଟଣାବଳୀର ସୁସଂଗତ ବିନ୍ୟାସ ନଥିଲେ ସେହି ସେହି ଚରିତ୍ର ଓ ସମାନଧର୍ମୀ ଘଟଣା ସହ ପାଠକର ବାରମ୍ବାର ସାକ୍ଷାତ ହେବାର ଆଶଙ୍କା ରହିଥାଏ । ଆଲୋଚ୍ୟ ଉପନ୍ୟାସର ପ୍ରତ୍ୟେକ ଘଟଣା ସହିତ ମାଳତୀ ଓ ସାଗର ଜଡ଼ିତ । ଫଳରେ ଉପନ୍ୟାସର ପ୍ରତ୍ୟେକ ପୃଷ୍ଠାରେ ପ୍ରାୟ ଏ ଦୁହିଁଙ୍କୁ ସାକ୍ଷାତ କରିବାକୁ ହୋଇଥାଏ । ପୁଣି ଉପନ୍ୟାସଟି ପ୍ରଣୟଧର୍ମୀ ହୋଇଥିବାରୁ ଏ ଦୁହିଁଙ୍କ ଶାରୀରିକ ଅଥବା ମାନସିକ ମିଳନ ପାଇଁ ପ୍ରତ୍ୟେକ ଘଟଣା ଓ ତାର ପୃଷ୍ଠଭୂମି କଳ୍ପିତ । ଏ ମିଳନ ପୁଣି ସାତ୍ତ୍ୱିକ ସ୍ତରରେ ନହୋଇ ଅନେକ ସ୍ଥଳରେ ଦେହଜ କାମନାର ସ୍ତରକୁ ଖସିଆସିଛି । ଫଳରେ ଉପନ୍ୟାସଟି କିଛି ପରିମାଣରେ ତାର ଶାଳୀନତା ରକ୍ଷା କରିପାରି ନାହିଁ । ଏହା ଲେଖକଙ୍କ ତରୁଣ ଜୀବନର କଳ୍ପନା । ତେଣୁ

ତରୁଣ ଜୀବନର ତରଳ ପ୍ରଣୟ ଓ ମିଳନ କାମନା ଏଥିରେ ରହିବା ସ୍ୱାଭାବିକ ।

ଉପନ୍ୟାସଟିର ସମସ୍ତ ଚରିତ୍ର ନିଜ ନିଜ କ୍ଷେତ୍ରରେ ଆଦର୍ଶ ସ୍ଥାନୀୟ । ସମସ୍ତେ ନିଜ ନିଜର ବିଶ୍ୱାସ ଓ ଆଦର୍ଶରେ ଅଟଳ ଓ ଦୃଢ଼ । ଜଣେ ଅନ୍ୟ ଜଣଙ୍କ ପାଇଁ ଚରମ ଉତ୍ସର୍ଗ ଓ ତ୍ୟାଗ ପାଇଁ ସର୍ବଦା ପ୍ରସ୍ତୁତ ଥିଲେ ମଧ୍ୟ ସମସ୍ତେ ନିଜ ନିଜର ଆଦର୍ଶ ଓ ବିଶ୍ୱାସରେ ଦୃଢ଼ରହି ନିଜ ନିଜ ପାଇଁ ଜୀବନର ଚରମ ବିପର୍ଯ୍ୟୟକୁ ଆହ୍ୱାନ କରିଛନ୍ତି । ପ୍ରଥମତଃ ଉପନ୍ୟାସର ମୁଖ୍ୟ ଚରିତ୍ର ମାଳମା କଥା ବିଚାର କଲେ ଏ ଦିଗଟି ସ୍ପଷ୍ଟ ହେବ । ମାଳମା ମୂଳରୁହିଁ ନିଜକୁ ଏକ ତଥାକଥିତ ଆଦର୍ଶବାଦ ଓ ନୈତିକ ମୂଲ୍ୟବୋଧର ଶୀର୍ଷରେ ଛିଡ଼ା କରାଇବା ପାଇଁ ଯୁହିଁଛି । ପ୍ରଥମେ ସ୍କୁଲରେ ଏବଂ ପରେ କଲେଜରେ ଅଧ୍ୟୟନ କାଳରେ ଆଚରଣରେ ଉଚ୍ଛୃଙ୍ଖଳ ଓ ଅସଂଯତ ଝିଅମାନଙ୍କ ଠାରୁ ସେ ନିଜକୁ ଦୂରେଇ ରଖୁଥିଲା । ଏକ ଦୁର୍ବଳ ମୁହୂର୍ତ୍ତରେ ସାଗରକୁ ଭଲପାଇଥିଲା । ପରେ ଘଟଣାଚକ୍ରରେ ବିଭିନ୍ନ ପ୍ରତିକୂଳ ପରିସ୍ଥିତିର ମୁକାବିଲା କରିବାକୁ ହୋଇଥିଲେ ମଧ୍ୟ ନିଜକୁ ସ୍ପର୍ଶ କରିବାର ସୁଯୋଗ ଅନ୍ୟ କୌଣସି ପୁରୁଷକୁ ଦେଇନଥିଲା । ନିଜର ଏହି ନିଷ୍ଠା, ପବିତ୍ରତା ଓ ଦୃଢ଼ତା ବଳରେହିଁ ଶେଷରେ ପ୍ରିୟ ସାଗରକୁ ପାଇଥିଲା । ସେ ସାଗରକୁ ପ୍ରାଣସମ ଭଲ ପାଇଥିଲେ ମଧ୍ୟ, ବିବାହ ପାଇଁ ନିଜ ଭିତରେ ଥିବା ଅକ୍ଷମତାକୁ ତାର ନିକଟରେ ପ୍ରକାଶ କରିବାପାଇଁ ସମର୍ଥ ହୋଇପାରି ନଥିଲା । ଏଥିପାଇଁ ତାର ନାରୀ ସୁଲଭ ଲଜ୍ୟା ଯେ କେବଳ ପ୍ରତିବନ୍ଧକ ଥିଲା ତାହା ନୁହେଁ, ଏହାକୁ ପ୍ରକାଶକରି ସାଗର ମନରେ ଦୁଃଖ ଦେବାପାଇଁ ଚାହିଁ ନଥିଲା । ବରଂ ସାଗର ସହ ବାସନ୍ତୀର ବିବାହକୁ ହସି ହସି ଗ୍ରହଣ କରି ନେଇଥିଲା । ସେମାନଙ୍କ ସୁଖ ଦାମ୍ପତ୍ୟ ଜୀବନରେ କେବେବି ନିଜର ପ୍ରେମିକା ଜୀବନର ଅଶାନ୍ତ ଛାୟା ପଡିବା ପାଇଁ ଦେଇ ନଥିଲା । ପ୍ରେମ ଓ ପ୍ରତିଜ୍ଞା ପାଳନ କ୍ଷେତ୍ରରେ ସାଗର ଭିତରେ ମଧ୍ୟ ସେହି ଅନମନୀୟ ଦୃଢ଼ତା ଦେଖିବାକୁ ମିଳେ । ନଚେତ୍ ଏକ ଦୁର୍ବଳ ମୁହୂର୍ତ୍ତରେ ନିଜର ପ୍ରେମିକା ଠାରୁ ପ୍ରତ୍ୟାଖ୍ୟାତ ହୋଇ ଏପରିକି ଜୋତାମାଡ଼ ଖାଇ (ଅବଶ୍ୟ ଏହାଥିଲା ତାର ଧାରଣା) ପ୍ରେମିକାକୁ ସୁଖୀ ରଖିବା ପାଇଁ ସମଗ୍ର ଜୀବନ ନିଜକୁ ଅନ୍ତର୍ଦାହ ମଧ୍ୟକୁ ଠେଲିଦେଇ ନଥାନ୍ତା । ତଥାପି ଉପନ୍ୟାସ ସୁଲଭ ଏମାନଙ୍କ ମିଳନ ପିପାସାହିଁ ଏମାନଙ୍କ ଚରିତ୍ରର ଦୁର୍ବଳ ଦିଗଟିକୁ

ଦେଖାଇ ଦଏ । ଏମାନେ ପରସ୍ପରକୁ ପରସ୍ପର ନିକଟରେ ଉନ୍ମୁକ୍ତ କରିପାରି ନଥିଲେ । ଅଥବା ଯେତେବେଳେ ନିଜକୁ ଉନ୍ମୁକ୍ତ କରିବାର ଅବକାଶ ପାଇଥିଲେ, ଜଣେ ଅନ୍ୟକୁ ଆଘାତ ଦେବା ଉପରେ ସୁଯୋଗ ହାତଛଡ଼ା କରି ଦେଇଥିଲେ । ଠିକ ଏହି ଅବସ୍ଥାରେ ହିଁ ସେକ୍ସପିୟରଙ୍କ ଅନେକ ନାଟକର ନାଟକୀୟ ଦ୍ୱନ୍ଦ୍ୱର ସୃଷ୍ଟି । ସେହି କଳା ଓ କୌଶଳ ଔପନ୍ୟାସିକ ସଫଳ ଭାବରେ ପ୍ରୟୋଗ କରି କଥାବସ୍ତୁର ଆବେଗ ଓ ଉତ୍କଣ୍ଠାକୁ ଚରମ ମୂର୍ଚ୍ଛନା ପର୍ଯ୍ୟନ୍ତ ରଖି ଉପନ୍ୟାସଟିକୁ ସୁଖପାଠ୍ୟ କରିପାରିଛନ୍ତି । ଉପନ୍ୟାସର ଅନ୍ୟାନ୍ୟ ଚରିତ୍ରମାନେ ମଧ୍ୟ ନିଜ ନିଜ ଆଦର୍ଶର ମହତ୍ତ୍ୱରେ ମହନୀୟ ଏବଂ ନିଜସ୍ୱ ମହନୀୟତାରେ ମହାନ । ବାସନ୍ତୀ ଭାଉଜ ଚରିତ୍ରଟି ଏ ଉପନ୍ୟାସର ଅନ୍ୟ ଏକ ମହାନ ଚରିତ୍ର । ଦୟା, କ୍ଷମା, ସ୍ନେହ, ମମତା ଓ ତ୍ୟାଗର ସେ ଥିଲେ ଏକ ମୂର୍ତ୍ତିମନ୍ତ ନାରୀରୂପ । ଭାରତୀୟ ନାରୀର ଆଦର୍ଶ ପରିପୂର୍ଣ୍ଣ ଭାବରେ ତାଙ୍କର ଚରିତ୍ରରେ ସଂଗୋପିତ ଥିଲା । ନଚେତ୍ ନିଜର ବିବାହିତ ସ୍ୱାମୀଙ୍କୁ ତାର ପ୍ରେମିକାର ପ୍ରଣୟ-ବଳୟ ଭିତରକୁ ଠେଲିଦେଇ ଦାମ୍ପତ୍ୟ ପ୍ରେମର ପଥରୁ ବିଭ୍ରାନ୍ତ ହୋଇଯାଇ ନଥାନ୍ତେ । ସେହିଭଳି ମାଳମାର ବାପା, ବୋଉ, ଭାଉଜ ଓ ଭାଇ ସ୍ୱସ୍ୱ କ୍ଷେତ୍ରରେ ନିଜର ଆଦର୍ଶ ଓ ନିଷ୍ଠା ବଳରେ ମହାନ ହୋଇ ଉଠିଛନ୍ତି । ଉପନ୍ୟାସଟିର କେତେକ କଳା ଓ ଗଠନଗତ ତ୍ରୁଟି ସତ୍ତ୍ୱେ ଚରିତ୍ର ଚିତ୍ରଣର ନିଖୁଣତା ଏହାକୁ ଏକ ଉଚ୍ଚକୋଟୀର ପର୍ଯ୍ୟାୟକୁ ନେଇପାରିଛି ।

ଉପନ୍ୟାସଟିର ଶୈଳୀ ସରସ କିନ୍ତୁ ସ୍ଥଳ ବିଶେଷରେ ଗମ୍ଭୀର । ଲେଖକ ବୃତ୍ତିରେ ଥିଲେ ଜଣେ ଇଞ୍ଜିନିୟର । ମାଳମା, ସାଗର ଓ ବାସନ୍ତୀକୁ ନେଇ ପ୍ରେମର ଏକ ସମବାହୁ ତ୍ରିଭୁଜ ଅଙ୍କନ କରିଛନ୍ତି । ଗଣିତ ଶାସ୍ତ୍ରର ଅନେକ ମିଶାଣ, ଫେଡ଼ାଣ, ହରଣ, ଗୁଣନ ଓ ଜ୍ୟାମିତି ସୂତ୍ରର ଅନେକ ଜଟିଳ ପ୍ରଣାଳୀରେ ଉକ୍ତ ତ୍ରିଭୁଜ ନିଖୁଣ ଭାବରେ ଅଙ୍କିତ । ଲେଖକ ବହୁବାର ଅଙ୍କଶାସ୍ତ୍ରର ଏହି ସାଧାରଣ ଶବ୍ଦଗୁଡ଼ିକୁ ପ୍ରୟୋଗ କରି ପ୍ରେମର ମୂଲ୍ୟାୟନ କରିଛନ୍ତି । ଉପନ୍ୟାସର ସର୍ବତ୍ର ଭାଷା ବ୍ୟବହାରରେ ସମତା ରକ୍ଷା କରାଯାଇ ପାରିନାହିଁ । ଭାବ ପ୍ରବଣତାର ବଶବର୍ତ୍ତୀ ହୋଇ ସ୍ଥଳ ବିଶେଷରେ ଭାଷା ମାର୍ଜିତ, ଭାବୋଦ୍ଦୀପକ ଓ ଗାମ୍ଭୀର୍ଯ୍ୟପୂର୍ଣ୍ଣ କିନ୍ତୁ ଅନ୍ୟ କେତେକ ସ୍ଥଳରେ ଭାଷା ଅତିସାଧାରଣ ତଥା ଗ୍ରାମୀଣ ।

ଔପନ୍ୟାସିକର ବିଚରଣ କ୍ଷେତ୍ର ହେଲା ସମାଜ । ସମାଜର ଗତି ଓ ମତି ପ୍ରତି ତାର ଥାଏ ତୀକ୍ଷ୍ଣ ଦୃଷ୍ଟି । ଉମେଶ ଚରଣ ସାଂପ୍ରତିକ ସମାଜର ଆଇନ ଓ ତାର ପ୍ରୟୋଗଧାରା ଉପରେ ଥିଲେ ସମ୍ପୂର୍ଣ୍ଣ ଆସ୍ଥାହୀନ । ସେହିପରି ଚଳନ୍ତି ସମାଜର ନୀତିହୀନ ରାଜନୀତିର କଠୋର ସମାଲୋଚକ । ଉପନ୍ୟାସର ନାମକରଣ ପ୍ରତୀକଧର୍ମୀ । ଅନନ୍ତ ସାଗର ଓ ଅନନ୍ତ ଆକାଶର ସଙ୍ଗମକୁ ନୀଳିମା କରିଥାଏ ସାକାର ବରଂ ଏକାକାର । ଏହାରି ଆଧାରରେ ଉପନ୍ୟାସର ପ୍ରଧାନ ଚରିତ୍ର ଦୁଇଟି ନାମିତ । ଆକାଶ ଓ ସାଗର ମଧ୍ୟରେ ଥିବା ପ୍ରେମର ନିଷ୍ଠା ଓ ଗଭୀରତା ସାଗର ନୀଳିମାର ପ୍ରେମରେ ସଂକେତାୟିତ । ତେଣୁ 'ଦୁମନ୍ତ ନୀଳିମା' ନାମକରଣ ବେଶ୍ ଇଙ୍ଗିତଧର୍ମୀ ଓ ମର୍ମସ୍ପର୍ଶୀ ।

ଉମେଶଚରଣଙ୍କ ଅନ୍ୟାନ୍ୟ ଉପନ୍ୟାସ ଏ ପର୍ଯ୍ୟନ୍ତ ଅପ୍ରକାଶିତ । ସେଗୁଡିକ ନିଶ୍ଚିତଭାବେ ଔପନ୍ୟାସିକଙ୍କ ଲେଖନୀର ସମୃଦ୍ଧ ପରିପ୍ରକାଶ ହୋଇଥିବ । ତାର ମୁଦ୍ରିତ ରୂପ ଦେଖିବାପାଇଁ ସେ ଆଉ ନାହାନ୍ତି । ବର୍ତ୍ତମାନ ସେସବୁ ଜାତୀୟ ସଂପଦ । ଆଶା କୌଣସି ସାହିତ୍ୟପ୍ରେମୀ ପ୍ରକାଶକ ସେସବୁକୁ ପ୍ରକାଶକରି ଉମେଶ ଚରଣଙ୍କ ସ୍ଵର୍ଗତ ଆତ୍ମାକୁ ଶାନ୍ତି ପ୍ରଦାନ କରିବେ ।......

ଡ. ଶରତଚନ୍ଦ୍ର ବଷୋୟୀ
ମୁଖ୍ୟ ଅଧ୍ୟାପକ : ଖେମୁଣ୍ଡି ମହାବିଦ୍ୟାଳୟ
ଓଡ଼ିଆ ବିଭାଗ

# 'ପରିଚିତ ପୃଥିବୀ–ଅପରିଚିତ ମଣିଷ'

## ପ୍ରଣୟ ଉପନ୍ୟାସ ପରଂପରାରେ ସ୍ରଷ୍ଟା ଉମେଶଚରଣ

'ପ୍ରଣୟ' ଓ 'ପରିଣୟ' –ଏହି ଦୁଇଟି ଶବ୍ଦର ସଂଜ୍ଞା ଓଡ଼ିଆ ସାହିତ୍ୟରେ ଯଥାଯଥ ଭାବରେ ରୂପାୟିତ ହୋଇନଥିବା ମନେହୁଏ । 'ପ୍ରଣୟ'ର ସମାର୍ଥ ବୋଧକ ଶବ୍ଦଭାବରେ ପ୍ରେମକୁ ଗ୍ରହଣ କରାଯାଏ । ଗୋଟିଏ ଦିଗରେ ପାଂରପରିକ ବିଶ୍ୱାସ ଏବଂ ଅନ୍ୟଦିଗରେ ତତ୍ତ୍ୱ ଅନୁଶୀଳନର ଧାରାରେ ପରିକଳ୍ପିତ ଏହି ଶବ୍ଦ ଅନାଦି ଅନନ୍ତକାଳରୁ ବିଶ୍ୱମାନସକୁ ପ୍ରଭାବିତ କରିଆସିଅଛି । ମାନବ ସଭ୍ୟତାର ଶୈଶବ-କାଳୀନ ଅନୁଭୂତି ଭିତରେ ଆମେ ଲକ୍ଷ୍ୟକରୁ ରାମାୟଣ ଓ ମହାଭାରତ ପରି ପରିବ୍ୟାପ୍ତ ସୃଷ୍ଟି ସମ୍ଭାର । ସେଠାରେ ପ୍ରେମ ବା ପ୍ରଣୟର ରୂପ ଅତି ବିଚିତ୍ର । କେଉଁଠାରେ ତାହା ତ୍ୟାଗପୂତ ଉତ୍ସର୍ଗୀକୃତ ମନୋବୃତ୍ତି ଭିତରେ ଦିବ୍ୟ ସ୍ତରରେ ଅବତୀର୍ଣ୍ଣ ତ, ଅନ୍ୟକେଉଁଠାରେ ପୈଶାଚ ମାନବୀୟ ପ୍ରବୃତ୍ତିଗତ ତାଡ଼ନା ଭିତରେ କଦାକାର ରୂପନେଇ ପ୍ରକାଶିତ । ଉଭୟ କ୍ଷେତ୍ରରେ କିନ୍ତୁ ରକ୍ତମାଂସର ଦେହ ନେଇ ପୃଥିବୀ ପୃଷ୍ଠରେ ଅବତୀର୍ଣ୍ଣ ମାନବର ସତ୍ତା ବିଲୁପ୍ତ ପ୍ରାୟ । ତ୍ୟାଗ ଏବଂ ଭୋଗ ଉଭୟ କ୍ଷେତ୍ରରେ ଚିନ୍ତାଧାରା ସୁପରିକଳ୍ପିତ ତଥା ବିଧି ନିର୍ଦ୍ଦେଶିତ । ଧୂଳିଧୂସରିତ ପୃଥିବୀ ଠାରୁ ମଣିଷ ସେଠାରେ ଭିନ୍ନ । ତ୍ୟାଗର ମହିମାରେ ଗୌରବୋଜ୍ଜ୍ୱଳ ମନୁଷ୍ୟର ପ୍ରତିମୂର୍ତ୍ତି ଯେପରି ଅବିଶ୍ୱସନୀୟ, ଭୋଗର ଲାଳସାଗର୍ଭିତ ପରିସରରେ ମାନବୀୟ ଚୂଡ଼ାନ୍ତ ପରିପ୍ରକାଶ ସମପରିମାଣରେ ଅବିଶ୍ୱସନୀୟ ମଧ୍ୟ । ତେବେ ବିଶ୍ୱାସର ସହ ଏତିକି କହିବା ଯଥାର୍ଥ ହେବ ଯେ, ମଣିଷକୁ ମଣିଷ ଭାବରେ ଗ୍ରହଣ କରିବା ଏ କ୍ଷେତ୍ରରେ ସମ୍ଭବପର ନୁହଁ ।

କୁହାଯାଏ 'ପ୍ରେମ ଓ ଯୁଦ୍ଧ' ଏ ଉଭୟ କ୍ଷେତ୍ରରେ ସବୁକିଛି ଗ୍ରହଣୀୟ । ଏଠାରେ ଜୟଲାଭ କରିବାଟି ହିଁ ମୂଳକଥା । ଉପଲକ୍ଷ୍ୟ ଯାହା ହେଉନା କାହିଁକି, ଲକ୍ଷ୍ୟ ହିଁ ଏକମାତ୍ର କାମ୍ୟବସ୍ତୁ । ଉଭୟ କ୍ଷେତ୍ରକୁ ଅନୁଧ୍ୟାନ କଲେ ଦେଖାଯାଏ ଯେ, ଦୁଇଟିଯାକ ମାନବୀୟ ପ୍ରବୃତ୍ତିକୁ ନେଇ ପରିକଳ୍ପିତ । ଉଭୟ କ୍ଷେତ୍ରରେ ମାନବୀୟ କାମନାର ମୁଦ୍ରାଙ୍କ ସ୍ପଷ୍ଟ । ଶତ ଆବରଣ ସତ୍ତ୍ୱେ ମାନବ ଯେ ଆରଣ୍ୟକ ପରିପ୍ରକାଶର ଏକ ସ୍ପଷ୍ଟ ଇସ୍ତାହାର ଏଥିରେ ସନ୍ଦେହ ନାହିଁ । ତେଣୁ କାମନାର ପରିତୃପ୍ତି ଏଠାରେ ମୁଖ୍ୟ ବିଷୟ । ବକ ଦଂପତିଙ୍କ ପ୍ରଣୟ ପରିପ୍ରେକ୍ଷୀରୁ ଆଦ୍ୟ ପରିକଳ୍ପିତ ସାହିତ୍ୟ ଏଯାବତ୍ ମାନବୀୟ ରୂପଚିତ୍ର ପରିପ୍ରକାଶ କଲାବେଳେ ସ୍ପଷ୍ଟ ହେଉ କିମ୍ବା ପ୍ରଚ୍ଛନ୍ନ ହେଉ, ସବୁ ସ୍ତରରେ ମାନବୀୟ ଅସମାଧିତ ପ୍ରବୃତ୍ତିକୁ ହିଁ ଅଂକିତ କରିବା ଦିଗରେ ଯତ୍ନଶୀଳ । ଯାହାକୁ କି ପାଶ୍ଚାତ୍ୟ ସମାଲୋଚକମାନେ "The animating principle of mind" ଭାବରେ ଅଭିହିତ କରିଥାନ୍ତି ।

ପ୍ରଣୟର ସଂଜ୍ଞା ଅତି ବ୍ୟାପକ । ଉଭୟ ଭୋଗ ଓ ତ୍ୟାଗ ଏହାର ପୃଷ୍ଠଭୂମି । ପରଂପରାର ତ୍ୟାଗ ତଥା ଆଧୁନିକ ଭୋଗ ଏହାକୁ ଭିନ୍ନ ଭିନ୍ନ ଭାବରେ ଅବସ୍ଥାପିତ କରିଥାନ୍ତି । ଫ୍ରଏଡ଼ଙ୍କ 'Libido' ଅଚରିତାର୍ଥ ମାନବୀୟ ଅବଚେତନରେ ଅବସ୍ଥାପିତ କରିଥାଏ ପ୍ରେମକୁ । ପରଂପରାର ପୃଥିବୀରେ ସ୍ୱର୍ଗୀୟ ଦେହୋତ୍ତର ଅବସ୍ଥା ହେଉଛି ଭଲ ପାଇବା । କୃଷ୍ଣ ଓ ରାଧା—ଅନନ୍ତ ଜିଜ୍ଞାସାର କେନ୍ଦ୍ରବିନ୍ଦୁ । ସେଠାରେ ପ୍ରାପ୍ତି ଓ

ଅପ୍ରାପ୍ତି ଭିତରେ ପ୍ରଭେଦ କ୍ଷୀଣ । କ୍ଷୀଣ କାହିଁକି, ଉଭୟ ସମାନ । ଦେହର ଦୁର୍ବାର ଆକର୍ଷଣ ଯେମିତି ପ୍ରବଳ, ତ୍ୟାଗର ମହିମାବନ୍ତ ସମ୍ଭାବନା ଠିକ୍ ସେପରି ସମୁଜ୍ଜ୍ୱଳ । ତେଣୁ ସର୍ବୋତ୍ତ ଭାବରେ କହିବାକୁ ଗଲେ ଏକ ଅସମାଧିତ ପ୍ରଶ୍ନବାଚୀ ସବୁକାଳରେ ପ୍ରଣୟ ଉପଖ୍ୟାନକୁ ରହସ୍ୟମୟ ଗଢିତୋଳିଛି । ଯେଉଁ ପ୍ରେମ ଆଖ୍ୟାନ ପରଂପରାରେ ରାଧାକଣ୍ଠରେ କବି କହିଛି—"ଜୀବନ ଗଲେ ଏତିକି କରିବ, ଶ୍ୟାମ ନାମ ମୋର ହୃଦେ ଲିହିବ", ସେଇ ପରଂପରାର କବିକଣ୍ଠରେ ପୁଣି ସ୍ଥାନ ପାଇଛି—ଲୀଳାନିଧି ହେ ଲଜ୍ଜେ ମୁଁ ଗଲିଣି ସଢ଼ି, ଲୁଗ୍ରଇଛ କାହିଁ ଶ୍ୟାମ ହେ ଦିଅ ମୋ ଲାଗି ଶାଢ଼ୀ" । ତେଣୁ ଏଯାବତ୍ ସବୁ ଅସମାଧିତ । ନା ଭୋଗ ନା ତ୍ୟାଗ । ବରଂ ଉଭୟର ସମଷ୍ଟି ଭିତରେ ଗୋଷ୍ଠୀ ଜୀବନ ପ୍ରତିଫଳିତ ।

ପ୍ରଣୟ ପଂରପରାରୁ ଦୃଷ୍ଟି ଫେରାଇ ଆଣିଲା ବେଳେ ପୁଣି ଏକ ସମସ୍ୟା ଭିତରକୁ ସ୍ୱତଃ ଦୃଷ୍ଟି ଆକର୍ଷିତ ହୋଇଯାଏ । ତାହା ହେଲା ଏ ପୃଥିବୀରେ ରୂପଲାଭ କରିଥିବା ଦୁଇଟି ଶ୍ରେଣୀ । ନାରୀ ଓ ପୁରୁଷ । ଦର୍ଶନ ଶାସ୍ତ୍ରର କ୍ଷେତ୍ରରୁ ବ୍ୟାବହାରିକ କ୍ଷେତ୍ର । ସାଂଖ୍ୟ ଦର୍ଶନ କୁହେ—ନାରୀ ହେଉଛି ସୃଜନୀର ମୂଳକ୍ଷେତ୍ର । କିନ୍ତୁ ପୁରୁଷର ଆବିର୍ଭାବରେ ହିଁ ସୃଜନର ସ୍ଫୁରଣ । ୟୁଂଗ କହନ୍ତି—ନାରୀ ଅବଚେତନ ପୁରୁଷ ଠାରୁ ଭିନ୍ନ । ନୂଆକରି ଗଢ଼ିଉଠିଥିବା ବାମମାର୍ଗୀ ଦର୍ଶନ କୁହେ – ନାରୀର ପରିପ୍ରକାଶ କ୍ଷେତ୍ର ପୁରୁଷ ଠାରୁ ଭିନ୍ନ । ସଂଘର୍ଷଶୀଳ ପୃଥିବୀ ପୌରୁଷର କ୍ଷେତ୍ର । ଅନୁକମ୍ପା ଓ ସହଯୋଗିତା ଭିତରେ ବଞ୍ଚେ ନାରୀ । କେମିତି ବୁଝେଇ ହେବ ମାଟି ଫଟେଇ ଅଙ୍କୁରିତ ହେଉଥିବା ବୀଜର ଅନୁଭୂତି । କେମିତି ବୁଝେଇ ହେବ ଆଉଜେଇ ନେଲାବେଳର ଅନୁଭୂତି । ତାହା ଅନନ୍ୟ, ତାହା ଅପରିକଳ୍ପନୀୟ । ପୌରୁଷର ବିଜୟଗାଥା ସେ କ୍ଷେତ୍ରରେ ମ୍ଳାନ । ତେଣୁ ନାରୀର ପୃଥିବୀ, ପୁରୁଷର ପୃଥିବୀ ଠାରୁ ଭିନ୍ନ । ଯେହେତୁ କଳାରେ ଜୀବନ ଓ ଜଗତର ଆତ୍ମଲୀନ ଅନୁଭୂତି ପ୍ରତିଫଳିତ, ତେଣୁ ପୌରୁଷର ପରିଚର୍ଯ୍ୟାରେ ନାରୀକୁ ଯଥାଯଥ ଭାବରେ ଉପସ୍ଥାପିତ କରିବା ସମ୍ଭବପର ନୁହେଁ । ଯଥାର୍ଥ ମନେ-ହୁଏ ଏ ଯୁକ୍ତି । ନଈ ପାଣିରେ ନପଶି, ନଈବଢ଼ିରେ ପହଁରିବାର ଅନୁଭୂତିକୁ ବ୍ୟାଖ୍ୟା କରିବା ସମ୍ଭବପର କି ? ଧରିତ୍ରୀର ବକ୍ଷରେ ଅଙ୍କୁରୋଦ୍‌ଗମର ଅନୁଭୂତି କ'ଣ ବଖାଣି-ପାରେ ଆକାଶ ? ନାରୀ ଜୀବନର କଥା ପୁରୁଷ ବା ଜାଣେ କ'ଣ ? କ୍ଷେତ୍ର ବିଶେଷରେ ତ୍ୟାଗର ମହିମାରେ ମୂର୍ତ୍ତିମନ୍ତ ନାରୀର ଚରିତ୍ର । ଭୋଗରେ ମତୁଆଲା ପୁରୁଷ ସେଠି ପ୍ରାୟତଃ ସୁଲଭ । ଅଥବା ! ରୂପାନ୍ତରଣ ପ୍ରକ୍ରିୟାରେ ନାରୀ ଓ ପୁରୁଷ ଭିନ୍ନ ଭିନ୍ନ ମାନସିକତାରେ ଅବତୀର୍ଣ୍ଣ ।

ଚୂଡ଼ାନ୍ତ ବକ୍ତବ୍ୟ ଭାବରେ ଏହା ଗ୍ରହଣୀୟ କି ? ଶାରିରୀକ ତଥା ମାନସିକ କ୍ଷେତ୍ରରେ ପାର୍ଥକ୍ୟ ସତ୍ତ୍ୱେ ଏପ୍ରକାରର ବକ୍ତବ୍ୟ ଠାରୁ ଉର୍ଦ୍ଧ୍ୱରେ କଳାକାରର କଳାକୁ ଅନେକ କ୍ଷେତ୍ରରେ ଅନୁଧ୍ୟାନ କରିହୁଏ । 'ଆନାକାରେ ନିନା' 'ଲୋଲିତା' 'ଦି ମଦର'ର ସ୍ରଷ୍ଟା ଏପରି ବିଚାରଧାରାକୁ ଅସ୍ୱୀକାର କରି ଜୀବନର ଚୂଡ଼ାନ୍ତ ନିଦର୍ଶନ ପ୍ରତିଫଳିତ କରିଛନ୍ତି, ଆପଣାର ସୃଷ୍ଟିରେ । ସାଆନ୍ତାଣୀ ଓ ଚଂପା ଦୁଇଦିଗନ୍ତର ମଣିଷକୁ ଆଂକିଲା ବେଳେ ଫକୀରମୋହନ ନାରୀ କି ପୁରୁଷ ଏକଥା ଚିନ୍ତା କରିବାର ଅବକାଶ ପାଏନି ମଣିଷ । ଅନ୍ତରଙ୍ଗ କଥାଟିଏ କହୁଥାଏ—ମଣିଷ । କେବେ ଗୀତରେ, କେବେ ଅଭିନୟରେ, ପୁଣି କେବେ କଥାରେ, କେବେ ତା କଣ୍ଠରେ' ରେବତୀର' ବିଷାଦ

କାଳିମା ତ କେବେ ତା’ କଣ୍ଠରେ ଦ୍ରୌପଦୀର ରହସ୍ୟ ବିଜଡ଼ିତ ହସ । ସବୁର ଅନ୍ତରାଳରେ ଥାଏ ନିଜର ସଗୁପ୍ତ ବେଦନାକୁ ପ୍ରକାଶ କରିବାର ଅଭିପ୍ରାୟ । ସେଠି ନାରୀ କ’ଣ ପୁରୁଷ କ’ଣ ? ଗୀତ—ନାଟରେ ଜୀବନର ଯେମିତି ଭେଦ ନଥାଏ, ଭେଦ ବି ନଥାଏ ନାରୀ ପୁରୁଷର । ତେଣୁ ବାଘସିଂ ପାଖରେ କିମ୍ବା ଶାରିଆ ଭଗିଆ ପାଖରେ ହାରିଯାଆନ୍ତି ମଂଗରାଜ, କିନ୍ତୁ ସଫଳ ହୁଏ ଚମ୍ପା । ଅଙ୍କନ ପ୍ରକ୍ରିୟାରେ ସମସ୍ତେ ସମାନ ।

‘ଅଶ୍ରୁଟୀକା’ ଉପନ୍ୟାସର କ୍ଷେତ୍ର ମଧ୍ୟ ଅବିକଳ ସେମିତି । ଏଠି ପ୍ରେମ ମୂଳବିନ୍ଦୁ । ପ୍ରେମ ପୁଣି ଦେହଜ କାମନା ଓ ଦେହାତୀତ ତ୍ୟାଗର ଦୋଛକି ଉପରେ ତ୍ରିଶଙ୍କୁବାଚୀଟିଏ ସୃଷ୍ଟି କରିଛି । ଅଶୋକ ଏବଂ ମନୋଜ । ନାୟିକା ସୁଧାର ଜୀବନର ଦୁଇଦିଗନ୍ତର ପ୍ରତୀକ । ଭୋଗର ବେଦୀରେ ମନୋଜର ମୁଦ୍ରାଙ୍କ ସୁସ୍ପଷ୍ଟ । ତ୍ୟାଗର ବଳୀସ୍ତୂପରେ ଅଶୋକ ଆସୀନ । କେନ୍ଦ୍ରବିନ୍ଦୁ ସୁଧା । ହାର/ଜିତର ପ୍ରଶ୍ନ ଏଠି ନିରର୍ଥକ । ମାୟା ପରି ଚରିତ୍ର ଏଠି ସମ୍ଭବ ହୋଇପାରେ । ଯିଏ ସମସ୍ତ ପ୍ରଲୋଭନକୁ ଉପେକ୍ଷା କରି ନିଜକୁ ଉତ୍ସର୍ଗ କରିପାରେ ଅଶୋକ ପାଇଁ । ସେଠି ଅନ୍ୟର ଆକ୍ଷେପ ମୂଲ୍ୟହୀନ । ଅନନ୍ତ ଐଶ୍ୱର୍ଯ୍ୟ ଓ ସମ୍ଭାରମୟ ଭବିଷ୍ୟତ ଔଜ୍ଜଲ୍ୟ ବିହୀନ । ଏଇ ପୃଥିବୀର ଲାଭକ୍ଷତିର ହିସାବ ଭିତରେ ବି ଏଠି ମଣିଷ ପ୍ରଶ୍ନ କରିପାରେ—“ମନୁଷ୍ୟ ପୁଣି ମନୁଷ୍ୟ ପାଇଁ ଏତେ ନିଷ୍ଠୁର ହୋଇପାରେ !”

ଉପନ୍ୟାସର ନାୟିକା ସୁଧା । ଜୀବନର କେଉଁ ଏକ ଦୁର୍ବଳ ମୁହୂର୍ତ୍ତରେ କରିଥିବା ଭୁଲ୍ (?) ପାଇଁ ଆଜୀବନ ଅନୁତପ୍ତ । ସାଗ୍ରହ ଅନୁରୋଧକୁ ବାରମ୍ବାର ପ୍ରତ୍ୟାଖ୍ୟାନ କରି ବିଷାଦର ଅନ୍ତହୀନ ପରିସରଟିଏ ନିଜେ ହିଁ ସୃଷ୍ଟି କରିଛି ନିଜ ପାଇଁ ତଥା ଅଶୋକ ପାଇଁ । ମନୋଜ କଥାବସ୍ତୁରେ ଏକ ଆକସ୍ମିକ ଚରିତ୍ର । ମୁହୂର୍ତ୍ତଟିଏ ପାଇଁ ତାର ଆବିର୍ଭାବ । କିନ୍ତୁ ସମଗ୍ର ଉପନ୍ୟାସର ଅଶ୍ରୁଳ ପରିଣତି ପାଇଁ ସେ ଉତ୍ତରଦାୟୀ । ଚରିତ୍ର ଅନୁଶୀଳନ କଲାବେଳେ ଦେଖାଯାଏ ଚରିତ୍ରଟିଏ ଠିଆ ହୋଇଥାଏ ମୂଲ୍ୟବୋଧର ଶକ୍ତ ମୂଳଦୁଆ ଉପରେ । ତେଣୁ ଚରିତ୍ର କହିଲେ— ‘A person who stands for a quality’. ଏଠି ମୂଲ୍ୟବୋଧଟା କ’ଣ ? ତ୍ୟାଗ ? ଜୀବନକୁ ତିଳତିଳ କରି ନିଃଶେଷ କରିଛନ୍ତି ଉଭୟ ନାୟକ ଓ ନାୟିକା । ଅଶ୍ରୁ ଓ ବିଷାଦର ପ୍ଲାବନରେ ଆପ୍ଲୁତ ସମଗ୍ର ସୃଷ୍ଟିଧାରା । ସତରେ କହିବାକୁ ଗଲେ କିଏ ବା ପୂର୍ଣ୍ଣ ଏ ପୃଥିବୀରେ । ସମସ୍ତେ କିଛି ଅପ୍ରାପ୍ତିର ବିଷାଦରେ ମୋହଗ୍ରସ୍ତ । କିନ୍ତୁ ପ୍ରାପ୍ତି ସୁଲଭ ଛଳନା ଓ ପ୍ରତାରଣା ନେଇ ବଂଚିବାକୁ ହୁଏ । ଯିଏ ଆପଣାକୁ ପ୍ରତାରିତ କରିପାରେ ନାହିଁ - ତା’ ଭାଗ୍ୟରେ ଅଶୋକ ଓ ସୁଧା ବାସ୍ତବ ରୂପ ନେଇ ଆତ୍ମପ୍ରକାଶ କରନ୍ତି ।

କଥା ପ୍ରସଙ୍ଗରେ ଯାହା କୁହାଯାଇଛି—ବିଷାଦତମ ଅନ୍ତରଙ୍ଗ ଅନୁଭୂତି ହେଉଛି ଜୀବନର ମଧୁମୟ ପରିପ୍ରକାଶର ଅନ୍ୟନାମ । ବାସ୍ତବିକ ଉମେଶଚରଣଙ୍କ ଅଶ୍ରୁଟୀକା ଏହାର ଏକ ସାର୍ଥକ ପରିପ୍ରକାଶ । ଉଭୟ ନାୟକ ଓ ନାୟିକା ଜୀବନକୁ ନିବିଡ଼ତାର ସହ ଅନ୍ୱେଷଣ କରିଛନ୍ତି । ବିବାହ ଭିତରେ ନିଃସଙ୍ଗ ଏକାକୀତ୍ୱ ଏବଂ ଅବିବାହିତା ହେବା ସତ୍ତ୍ୱେ ଅନ୍ତରଙ୍ଗ ନିବିଡ଼ ଆତ୍ମୀୟତା ଉପନ୍ୟାସକୁ ମାର୍ମିକ କରି ଗଢ଼ିତୋଳିଛି ।

ଓଡ଼ିଆ ପ୍ରଣୟ ପରମ୍ପରାରେ ପ୍ରାପ୍ତି ଓ ଅପ୍ରାପ୍ତିର ପୃଷ୍ଠଭୂମିରେ ରାଧାକୃଷ୍ଣଙ୍କ ପରବର୍ତ୍ତୀ ପର୍ଯ୍ୟାୟରେ ଏପ୍ରକାରର ପରିପ୍ରକାଶ ବିରଳ କହିଲେ ଅତ୍ୟୁକ୍ତି ହେବ ନାହିଁ । କଥାବସ୍ତୁର ମୂଳ ଦୃଷ୍ଟିକୋଣ ଏପରି ଏକ ସତ୍ୟତାକୁ ହିଁ ଆକର୍ଷିତ କରିଥାଏ । ଅତ୍ୟାଧୁନିକ ନାଟ୍ୟ ସମାଲୋଚନା କ୍ଷେତ୍ରରେ ବିଶେଷ ପ୍ରଭାବ ବିସ୍ତାର କରିଥିବା The mirror and the cage principal କୁ ଏଠାରେ ଉଲ୍ଲେଖ କରାଯାଇପାରେ । ସୁଧାକୁ କିଏ ବାଧ କରିଛି ଜୀବନକୁ ରୂପାନ୍ତରିତ କରିବାପାଇଁ ସନ୍ନ୍ୟାସିନୀ ଭାବରେ ।, ସମାଜ, ପରିବାର, ପ୍ରଣୟୀ, ବା ଅନ୍ୟ କିଏ ? 'ମନର ମୂଳେ ଏ ଜଗତ' —ଯଥାର୍ଥରେ ଏହା ହିଁ ସତ୍ୟ । ଅତୀତରେ ହଜିଯାଇପାରିଥାନ୍ତା କୌଣସି ଏକ ବର୍ଷଣ ମୁଖର ଅପରାହ୍ନର ଅନୁଭୂତି । କାମନାର ବେଦୀରେ ନିକ୍ଷିପ୍ତ କାମନାଶ୍ରତ୍ୱର ସନ୍ଧାନ କେହି କେବେ ବି ପାଇନଥାନ୍ତେ । ଜିତି ହୋଇ ପାରିଥାଆନ୍ତା ସମାଜକୁ । କିନ୍ତୁ ସମାଜ ପାଖରେ ଜିତିବାର ବୃଥା ସଫଳତା ଆଗରେ ସମଗ୍ର ଜୀବନ ସନ୍ତୁଳିତ ହୋଇଥାନ୍ତା ନିଜ ପାଖରେ । ଅକୁପଣ ବିଶ୍ୱାସ ପାଖରେ ଶତଧା ବିଦୀର୍ଣ୍ଣ ହୋଇଥାନ୍ତା ବ୍ୟକ୍ତିଟିଏ । ତେଣୁ ବ୍ୟକ୍ତିର ପରାଜୟରୁ ହିଁ ବ୍ୟକ୍ତିତ୍ୱର ବିଳୟ ଏଠାରେ ସମ୍ଭବପର ହୋଇପାରିଅଛି ।

ଗତାନୁଗତିକ ପ୍ରଣୟ ପରଂପରାର ନିୟମାନୁବର୍ତ୍ତୀ ପରିପ୍ରକାଶ 'ଅଶ୍ରୁଟୀକା' ଉପନ୍ୟାସରେ ଲକ୍ଷ୍ୟ କରିହୁଏ ନାହିଁ । ମୁଖ୍ୟ ଚରିତ୍ର ସୁଧା ଓ ଅଶୋକ—ପ୍ରାପ୍ତି ଓ ଅପ୍ରାପ୍ତିର ଧରାବନ୍ଧା ପରିସର ଠାରୁ ଭିନ୍ନ ଭାବରେ ରୂପାୟିତ । ଜୀବନକୁ ଖୋଜିଛନ୍ତି ଉଭୟ ଚରିତ୍ର । ଉଭୟଙ୍କ ତ୍ୟାଗପୂତ ଆଖ୍ୟାନରେ ଗତିଶୀଳ ହୋଇଉଠିଛି କଥାବସ୍ତୁ । କିନ୍ତୁ ଏଠାରେ କାହାଣୀ ନୁହେଁ, ଚରିତ୍ର ଏବଂ ଚରିତ୍ରକୁ କେନ୍ଦ୍ରକରି ବିକାଶ ଲାଭ କରିଥିବା ଅଶ୍ରୁଳ ପରିବେଶଟି ହିଁ ବେଶ୍ ଗୁରୁତ୍ୱପୂର୍ଣ୍ଣ ମନେହୁଏ । ପ୍ରଣୟ ପଲ୍ଲବିତ ହୋଇନାହିଁ କୈଶୋର କିମ୍ବା ଯୌବନର ଆଗ୍ନେୟ ଉତ୍ତାପରେ । ବରଂ ଶାନ୍ତ, ସ୍ନିଗ୍ଧ ତ୍ୟାଗପୂତ ପ୍ରବାହ ମଧ୍ୟରେ ଅଧିକ ତେଜୋଦୀପ୍ତ ରୂପଲାଭ କରିଛି ପ୍ରଣୟ ସାଧନା ।

ଉତ୍ତର ଷାଠିଏ ଓଡ଼ିଆ କଥା ସାହିତ୍ୟ ପରଂପରାରେ ଅଶ୍ରୁଟୀକା ଏକ ଅନନ୍ୟ ସାଧାରଣ ପରିକଳ୍ପନା । ସ୍ୱାଧୀନତାର ସ୍ୱପ୍ନଭଙ୍ଗ ପରିପ୍ରେକ୍ଷୀରେ ଯେତେବେଳେ କବିତା, ଗଳ୍ପ, ନାଟକ ପରୀକ୍ଷାଧର୍ମୀ ଶୈଳୀ ସର୍ବସ୍ୱ ଅନୁଧ୍ୟାନ ଭିତରେ ମଗ୍ନ, ଠିକ୍ ସେତିକିବେଳେ ଉପନ୍ୟାସ ପରଂପରାରେ ଆଧୁନିକତାର ଅନୁବର୍ତ୍ତନ ଦିଗରେ ଯତ୍ନଶୀଳ । ଅଶ୍ରୁଟୀକା ଉଭୟ ଭାବ ଓ ଶୈଳୀ କ୍ଷେତ୍ରରେ ଏକ ଅଭିନବ ପ୍ରୟାସ । ତ୍ୟାଗ ଭିତରେ ଭୋଗ, ଅପ୍ରାପ୍ତି ଭିତରେ ପ୍ରାପ୍ତି— ଅଶ୍ରୁଟୀକାର ମୂଳ କଥାବସ୍ତୁ । ଦିନେ ଏ ମାଟିର ଚଂପୂ, ପଦାବଳୀ ଯେମିତି ଓଡ଼ିଆ ସାରସ୍ୱତ ପରଂପରାରେ ନବୀନ ସ୍ୱର ମୂର୍ଚ୍ଛନା ସୃଷ୍ଟି କରିପାରିଥିଲା—ଠିକ୍ ସେପରି ଓଡ଼ିଆ କଥା ସାହିତ୍ୟ ପରଂପରାରେ ଅଭିନବ ଭାବ ଓ ପରିପ୍ରକାଶର ଧାରାକୁ ଭିତ୍ତି କରି 'ଅଶ୍ରୁଟୀକା' ନବଦିଗନ୍ତର ସନ୍ଧାନ ପ୍ରଦାନ କରିବା ଦିଗରେ ସଫଳତା ହାସଲ କରିପାରିଅଛି ।

ଦେବୀ ପଟ୍ଟନାୟକ

ବ୍ରହ୍ମପୁର ବିଶ୍ୱବିଦ୍ୟାଳୟ

# ଜୀବନୀକାର ଉମେଶ ଚରଣ

ଅଧ୍ୟାପକ ଅଲେଖ ଚନ୍ଦ୍ର ପ୍ରଧାନ

## ଏକ

ସାହିତ୍ୟର ମହତ୍ତମ ସଂଜ୍ଞାଟି ଜୀବନ ଓ ନାନ୍ଦନିକତା ଉପରେ ଆଧାରିତ । ଜୀବନର ସକଳ ଶ୍ରୀ ଓ ବିଶ୍ରୀକୁ ନେଇ ସାହିତ୍ୟର ବର୍ଣ୍ଣିଜ ଏବଂ 'ନାନ୍ଦନିକତା' ତାହାର ମୂଲ୍ୟାୟନର ମାନଦଣ୍ଡ । ତେଣୁ ସାହିତ୍ୟର କାଳୋତ୍ତୀର୍ଣ୍ଣତା ଏ ଉଭୟର ସାର୍ଥକ ସମନ୍ୱୟ ସାପେକ୍ଷ । ଏହି ଦୃଷ୍ଟିରୁ ସାହିତ୍ୟ ଜଗତରେ 'ଜୀବନୀ' ବା 'ଚରିତ ସାହିତ୍ୟ'ର ମହତ୍ତ୍ୱ ଉପଲବ୍ଧି କରାଯାଇପାରେ । କାରଣ ସାହିତ୍ୟର ଅନ୍ୟାନ୍ୟ ବିଭାଗରେ ପ୍ରତିଫଳିତ ଜୀବନର ଚିତ୍ର ସତ୍ୟର ପଟ୍ଟଭୂମିକାରେ ଏକ କଳ୍ପିତ ରୂପ; ଏପରିକି ଇତିହାସ ବର୍ଣ୍ଣିତ ଚିତ୍ର ଓ ଚରିତ୍ରରେ ମଧ୍ୟ କଳ୍ପନାର ପୁଟ ଦୁର୍ଲକ୍ଷ ନୁହେଁ । କିନ୍ତୁ ଜୀବନୀ ବା ଚରିତ ସାହିତ୍ୟରେ ଜୀବନର ନିରାଭରଣ ରୂପ ହିଁ ପ୍ରକଟିତ; ତାହା ସ୍ଥୂଳ ତଥ୍ୟ ଭିତ୍ତିକ ମହତ୍ତମ ସତ୍ୟର ଉଦ୍‌ଘାଟନ ।

ପ୍ରସିଦ୍ଧ ଐତିହାସିକ ଟ୍ରେଭେଲିଆନ୍‌ଙ୍କ ମତରେ ଜୀବନ ଚରିତ ହେଉଛି Personalised history. କାର୍ଲାଇଲ୍‌ଙ୍କ ଭାଷାରେ— "History is the essence of numerous biographies. If one wants to know the meaning of history let him look in to the lives of greatmen." ଇତିହାସ ହେଉଛି ବହୁ ସଂଖ୍ୟକ ଜୀବନୀର ସାର ସଂଗ୍ରହ । ତେଣୁ ଇତିହାସର ତାତ୍ପର୍ଯ୍ୟ ଅବଗତ ହେବାପାଇଁ ମହାପୁରୁଷମାନଙ୍କ ଜୀବନୀ ଅଧ୍ୟୟନ କରିବା ସର୍ବାଦୌ ଆବଶ୍ୟକ । କିନ୍ତୁ 'ଜୀବନ ଚରିତ' ଇତିହାସ ନୁହେଁ କିମ୍ବା ତଥ୍ୟ ଭାରାକ୍ରାନ୍ତ ଜୀବନୀ ପ୍ରଚଳିତ ଅର୍ଥରେ 'ଜୀବନୀ' ବା 'ଚରିତ ସାହିତ୍ୟ'ର ଅନ୍ତର୍ଗତ ହେବ ନାହିଁ । ତାହା ଇତିହାସର ଅନ୍ୟ ଏକ ରୂପ ମାତ୍ର । ଇତିହାସ ଓ ଚରିତ ସାହିତ୍ୟ ଅଭିନ୍ନ ନୁହନ୍ତି । ଉଭୟ ମଧ୍ୟରେ ସ୍ପଷ୍ଟ ପ୍ରଭେଦ ବିଦ୍ୟମାନ । ଇତିହାସ ବହୁ ନାୟକର ଆଲେଖ୍ୟରେ ଶବଳିତ । କିନ୍ତୁ ଜୀବନୀ ଏକ ନାୟକଙ୍କର ପୁଷ୍କଳ ପ୍ରକାଶ । ଇତିହାସରେ ବହୁଜୀବନର ବିବରଣ ମଧ୍ୟରେ ସମଗ୍ରର ପ୍ରାଣ ସ୍ପନ୍ଦନ

ଅନୁଭୂତ ହେଉଥିବେଳେ ଚରିତ ସାହିତ୍ୟରେ ସମପୂର ପ୍ରବହମାନ ଧାରାରେ ବ୍ୟକ୍ତି ଜୀବନର ଗତି ଓ ପ୍ରକୃତି ନିରୂପିତ । ତେଣୁ ମନୁଷ୍ୟ ଚରିତ୍ରର କୀର୍ତ୍ତିଧାରା ବଜାୟ ରଖିବା ଇତିହାସ ଓ ଚରିତାଖ୍ୟାନ ରଚନାର ଉଦ୍ଦେଶ୍ୟ ହେଲେ ମଧ୍ୟ ଇତିହାସରେ ଭଲ ମନ୍ଦ ନିର୍ବିଶେଷରେ ଯେ କୌଣସି ଦେଶ ବା ଜାତିର ଅତୀତ ବିବୃତ ହୋଇଥାଏ ଏବଂ ଜୀବନୀକାର ଚରିତାଖ୍ୟାନ ରଚନା ପାଇଁ ବିଶିଷ୍ଟ ବ୍ୟକ୍ତିଟିକୁ ହିଁ ଖୋଜିଥାଏ । ଅର୍ଥାତ୍ "ଯେଉଁ ଚରିତ୍ର ମଧ୍ୟରେ ବିଶିଷ୍ଟତା ନାହିଁ, ଯାହା ସମାଜ ଉପରେ କୌଣସି ଛାପ ରଖିପାରିବାକୁ ଅକ୍ଷମ, ତାହା ଚରିତାଖ୍ୟାନର ଉପଜୀବ୍ୟ ନୁହେଁ । ଯେଉଁ ବ୍ୟକ୍ତି କୀର୍ତ୍ତିମାନ ନୁହେଁ, ଯାହାର ନାମ ସ୍ଥାୟୀ ହେବାର ଆଶା ନାହିଁ, ତାର ଜୀବନ କଥା ମଧ୍ୟ ଆଖ୍ୟାନ ଯୋଗ୍ୟ ନୁହେଁ ।" ଆରିଷ୍ଟୋଟଲ୍ ଯଥାର୍ଥରେ କହିଛନ୍ତି A career, which is serious, complete and of a certain magnitude, is a fit biographic theme. ଅର୍ଥାତ୍ ଯେଉଁ ଜୀବନ ପ୍ରଗାଢ଼, ସମ୍ପୂର୍ଣ୍ଣ ଏବଂ ମହତ୍ ତାହା ହିଁ ଚରିତାଖ୍ୟାନ ପାଇଁ ଏକାନ୍ତ ଉପଯୋଗୀ । ଏଠାରେ Megnitude ଶବ୍ଦଟି ବଡ଼ ଅର୍ଥପୂର୍ଣ୍ଣ । 'ଜୀବନର ମହତ୍ତ୍ୱ'କୁ ଏହା ସୂଚେଇଥାଏ । ଏଇ ମହତ୍ତ୍ୱକୁ ବାଦ ଦେଲେ ଚରିତ ସାହିତ୍ୟ ଅସାର୍ଥକ ହୋଇଯିବ । ତେଣୁ ଜୀବନ କାଳ ମଧ୍ୟରେ ବ୍ୟକ୍ତି ବିଶେଷ ଲାଭ କରିଥିବା ପ୍ରଶଂସାର ବ୍ୟାପ୍ତି ଓ ପରିପ୍ରେକ୍ଷୀରେ ମୁଗ୍ଧ ହୋଇ ତାଙ୍କ ବିଷୟରେ ଚରିତ ସାହିତ୍ୟ ସୃଷ୍ଟି କରିବା ବୃଥା ଶ୍ରମ ମାତ୍ର ।

## ଦୁଇ

ଇଂଜନପୁର ଉମେଶ ଚରଣଙ୍କ ରଚିତ 'ଆମ ନେହରୁ' ଜୀବନୀ ଗ୍ରନ୍ଥ ଥୀମ୍ ଦୃଷ୍ଟିରୁ ମହତ୍ତ୍ୱପୂର୍ଣ୍ଣ ନିଶ୍ଚୟ । ପରାଧୀନ ଭାରତ ବର୍ଷର ନିରନ୍ଧ୍ର ଅନ୍ଧକାର ମଧ୍ୟରେ ପଣ୍ଡିତ ଜବାହାରଲାଲ ନେହରୁ ଥିଲେ ଏକ ପ୍ରଭାମୟ ପ୍ରକାଶ । ଗୋଟିଏ ପରାଧୀନ ଜାତିର ସକଳ ଶୋଷଣ ଓ ପୀଡ଼ନର କାରୁଣ୍ୟ ପୂର୍ଣ୍ଣ ପୃଷ୍ଠଭୂମିକାରେ ଏ ଉପମହାଦେଶର ସ୍ୱାଧୀନତା ପାଇଁ ତାଙ୍କ ସ୍ୱପ୍ନ ଓ ସଂକଳ୍ପ ଅତୁଳନୀୟ । କୋଟିପତି ମୋତିଲାଲଙ୍କ ପୁତ୍ର ଜବାହାର, ସ୍ୱାଧୀନତା ସଂଗ୍ରାମରେ ଝାସ ଦେଇ ବାରମ୍ବାର କାରାଗୃହ ମଧ୍ୟରେ କି କଷଣ ଭୋଗୀ ନାହାନ୍ତି ! ନିରନ୍ଧ୍ର, ନିଭୃତ କୋଠରୀ,

ଭୂମିରେ ଶୟନ, ମୁଣ୍ଡ ଉପରେ ମଶା ମାଛିଙ୍କ ବେହରଣ । ଶୋଇବା ନ ହେଲେ ଉଠି ବସି ଭାରତର ଭବିଷ୍ୟତ ଚିନ୍ତା । ଆନନ୍ଦ ଭବନର ସୁଖ ସ୍ୱପ୍ନ ସେ ବିସ୍ମରି ଯାଇଥିଲେ । କେଉଁଠି ପତ୍ନୀ କମଳା ନେହରୁ, କେଉଁଠି ପ୍ରାଣ ପ୍ରତିମ କନ୍ୟା ଇନ୍ଦିରା ଏବଂ ଆଉ କେଉଁଠି ସେ ! ଆଧୁନିକ ଭାରତର ଭାଗ୍ୟ ନିର୍ମାତା ଜବାହାରଙ୍କ ଦୁଃଖ ଦୁର୍ଦ୍ଦଶା ଶୁଣିଲେ କାହାଣୀ ପରି ଲାଗେ । ଥରେ କଚେରୀରେ ତାଙ୍କ ବିଚାର ଚାଲିଥିଲା ବେଳେ ଜଜଙ୍କୁ ସେ ଶୁଣାଇଥିଲେ "ସ୍ୱାଧୀନତା ସଂଗ୍ରାମରେ ଭାରତର ସେବା କରିବାଠୁ ବଳି ସୌଭାଗ୍ୟ ଆଉ କିଛି ହୋଇପାରେନା । ତା' ଛଡ଼ା ମହାତ୍ମାଗାନ୍ଧୀଙ୍କ ପରି ନେତାଙ୍କ ନିର୍ଦ୍ଦେଶରେ କାମ କରିବା ଏକ ପରମ ସୌଭାଗ୍ୟ । ଦେଶର ପୂର୍ଣ୍ଣ ସ୍ୱାଧୀନତା ପାଇଁ ଲଢ଼ୁ ଲଢ଼ୁ ଦେଶ ପାଇଁ ଆତ୍ମବଳି ଦେବାଠାରୁ ଅଧିକ ଗୌରବ ଆଉ ମଣିଷର କ'ଣ ଥାଇପାରେ ।"

ଆଜି ସେ ସବୁ ଇତିହାସ । ଜୀବନୀକାର ଉମେଶ ଚରଣ ଇତିହାସର ସେହି ସୁବର୍ଣ୍ଣ ଅଧ୍ୟାୟରୁ ଅନୁପମ ଚରିତ୍ରଟିଏ ଚୟନ କରିଛନ୍ତି ଜୀବନୀ ଗ୍ରନ୍ଥ ରଚନା ପାଇଁ । 'ଆମ ନେହରୁ' ଗ୍ରନ୍ଥଟି ଏକ କୀର୍ତ୍ତିମାନ, ମହତ୍ତ୍ୱପୂର୍ଣ୍ଣ ଜୀବନର ଅମର ଗାଥା । ତେବେ ଏହା ପଣ୍ଡିତ ନେହରୁଙ୍କ ପୂର୍ଣ୍ଣାଙ୍ଗ ଜୀବନ ଚରିତ ନୁହେଁ ।

## ତିନି

ନେହରୁଙ୍କ ଶୈଶବ, ଛାତ୍ରଜୀବନ, ସ୍ୱଦେଶରେ ବ୍ୟାରିଷ୍ଟର ନେହରୁ, ପ୍ରଥମ ସାକ୍ଷାତରେ ଗାନ୍ଧୀ ଓ ନେହରୁ, ସକ୍ରିୟ ରାଜନୀତିରେ ଆନନ୍ଦ ଭବନ, ରାମଚନ୍ଦ୍ର ଯୋଗୁଁ ରାଜନୀତି, ସକ୍ରିୟ ରାଜନୀତିରେ ନେହରୁ, ନେହରୁଙ୍କ ପ୍ରଥମ ବନ୍ଦୀ ଜୀବନ, ଶାସନର ଅଦ୍ଭୁତ ଅଭିଜ୍ଞତା, ପିତା ପୁତ୍ରଙ୍କ ମଧ୍ୟରେ ମତଭେଦ, କଂଗ୍ରେସ ସଭାପତି ନେହରୁ, କାରୁଣ୍ୟର ବଳୟ ଭିତରେ ନେହରୁଙ୍କ ଲେଖନୀ, ଗାନ୍ଧୀଙ୍କ ସହ ମତଭେଦ, ନିଘୃତ ଜବଲରେ ନେହରୁ, ନିଃସଙ୍ଗ ନେତୃତ୍ୱର ବିପୁଳ ବିଜୟ, ବିଦେଶ ଭ୍ରମଣ ଓ କଂଗ୍ରେସରୁ ଅସ୍ଥାୟୀ ବିଶ୍ରାମ, ପୁଣି ସକ୍ରିୟ ରାଜନୀତିରେ ନେହରୁ, ଭାରତଛାଡ଼ ଆନ୍ଦୋଳନ ଓ ନେହେରୁ, ଶାସନର ସର୍ବୋଚ୍ଚ କ୍ଷମତାରେ ନେହରୁ, ସ୍ୱଦେଶୀ ଶାସନ ଓ ନେହରୁ, ସ୍ୱାଧୀନତାର

ଦ୍ୱାରା ଦେଶରେ ନେହରୁ, ପ୍ରଧାନ ମନ୍ତ୍ରୀ ନେହରୁ, ହେଁ ସାମ !
ଏହିପରି ସମୁଦାୟ ଚଉଦଶିଟି ପରିଚ୍ଛେଦରେ ଏହି ଗ୍ରନ୍ଥର ପ୍ରସ୍ତୁତ ।
ନେହରୁଙ୍କ ଜେଜେ ବାପାଙ୍କ ଜେଜେ ପଣ୍ଡିତ ରାଜ କାଉଲ ତତ୍କାଳୀନ
ଭାରତ ସମ୍ରାଟଙ୍କ ଶ୍ରଦ୍ଧା ଭାଜନ ହୋଇ ଦିଲ୍ଲୀଠାରେ ବଗିଚା ଜାଗିର
ପାଇଥିଲେ । ତେଣୁ ସେ କାଶ୍ମୀର ଛାଡ଼ି ଚାଲି ଆସିଥିଲେ ଦିଲ୍ଲୀ ସହରକୁ ।
ଜାଗିର ନିକଟସ୍ଥ କେନାଲ କୂଳରେ ବସବାସ କଲେ । ହିନ୍ଦୀରେ
'ନାହା'ର ଅର୍ଥ ଗାଧୋଇବା । ଏଥିରୁ ନିଷ୍ପନ୍ନ 'ନେହରୁ' ସମ୍ବୋଧନରେ
ରାଜକାଉଲ୍‌ଙ୍କ ପରିବାର ପରିଚିତ ହେଲେ । କାଳକ୍ରମେ 'କାଉଲ'
ଫଙ୍କାଟି ଲୁଚିଗଲା ସେହି ପରିବାରରେ । ପଣ୍ଡିତ ମୋତିଲାଲ ନେହରୁ ଓ
ସ୍ୱରୂପ ରାଣୀଙ୍କ ପ୍ରଥମ ସନ୍ତାନ ଭାବେ ଜବାହାର ଲାଲ ଜନ୍ମଗ୍ରହଣ କଲେ
୧୮୮୯ ମସିହା ନଭେମ୍ବର ୧୪ ତାରିଖ ଦିନ । "ମୋତିଲାଲ ଅତି
ଆନନ୍ଦରେ ପୁଅର ନାମକରଣ କରିଥିଲେ 'ଜବାହାର' । ଏକ ଗାଢ଼
ନାଲରଙ୍ଗର ମଣି । ଅନ୍ଧାରରେ ସ୍ୱୟଂ ଆଲୋକିତ - ଆଲୁଅରେ ପ୍ରଜ୍ୱଳିତ
— ଆଘାତ ପ୍ରତିଘାତରେ ଅକ୍ଷତ ।"

ପରବର୍ତ୍ତୀ ଜୀବନରେ ଏହି ନାମକରଣର ସାର୍ଥକତା କେବଳ
ଏକ ବ୍ୟକ୍ତି, ଏକ ପରିବାର ନିକଟରେ ନୁହେଁ, ବରଂ ସମଗ୍ର ବିଶ୍ୱରେ
ଏହାର ସାର୍ଥକତା ପ୍ରତିପାଦିତ । 'ଆମ ନେହରୁ' ଏକ ଜୀବନୀ ମାତ୍ର
ନୁହେଁ । ତଥ୍ୟନିଷ୍ଠ ପରିପ୍ରକାଶ କେବଳ ଏହାର କଳେବରକୁ କବଳିତ
କରିଛି, ତାହା ନୁହେଁ । ସ୍ରଷ୍ଟା ଏଠାରେ ଏକ ସ୍ୱତନ୍ତ୍ର ଦୃଷ୍ଟିକୋଣ ନେଇ
ଜବାହାରଙ୍କ ଜୀବନକୁ ଆଙ୍କିବାର ଚେଷ୍ଟା କରିଛନ୍ତି । ଆତ୍ମୀୟତାର
ପ୍ରଲେପ ତଥା ସ୍ମରଣୀୟ ଘଟଣାବଳୀର ତଥ୍ୟ ଭିତ୍ତିକ ପରିପ୍ରକାଶ
ପୁସ୍ତକଟିକୁ ଏକ ନୂତନ ସ୍ୱାଦୁ ପ୍ରଦାନ କରିଅଛି । ପୁସ୍ତକଟିରେ
ପ୍ରତିଫଳିତ ପ୍ରତ୍ୟେକ ଘଟଣା ଅନ୍ତରାଳରେ ଏକ ସ୍ୱତନ୍ତ୍ର ଲେଖକୀୟ
ଅଭିବ୍ୟକ୍ତିର ସ୍ପଷ୍ଟ ମୁଦ୍ରାଙ୍କ ଅନୁଭବ କରିହୁଏ । ଏଠାରେ ଜୀବନର
ଘଟଣାଗୁଡ଼ିକୁ ନୀରସ ପରିବେଷଣ ମଧ୍ୟରେ ଆବଦ୍ଧ କରି ରଖାଯାଇ
ନାହିଁ । ବ୍ୟକ୍ତି ଜୀବନର ଉତ୍କର୍ଷ ପ୍ରତିପାଦନରେ ପ୍ରତ୍ୟେକ ଘଟଣା
ପ୍ରମୁଖ ଭୂମିକା ଗ୍ରହଣ କରିଅଛି । ଘଟଣାର ପୃଷ୍ଠଭୂମିରେ ବ୍ୟକ୍ତି
ଜୀବନର ସ୍ୱାତନ୍ତ୍ର୍ୟ ସ୍ପଷ୍ଟ ଭାବରେ ପ୍ରତିଭାତ ହୋଇଅଛି ।

ଇତିହାସକୁ ଅନୁଧ୍ୟାନ କଲେ ଦେଖାଯାଏ ଯେ, ବ୍ୟକ୍ତି ଅପେକ୍ଷା ବ୍ୟକ୍ତିତ୍ୱର ପରାକାଷ୍ଠା ସମୟର ତଥାକଥିତ ଗତିଧାରାକୁ ପରିବର୍ତ୍ତିତ କରିବାରେ ସକ୍ଷମ ହୋଇଥାଏ। ସମୟ ଓ ସ୍ରୋତର ଅନୁକୂଳତାରେ ନୁହେଁ, ପ୍ରତିକୂଳ ପରିସ୍ଥିତି ମଧ୍ୟରେ ସୁଦ୍ଧା ଏକ ନୂତନ ଦିଗ୍‌ଦର୍ଶନ ପ୍ରଦାନ କରିବାରେ ହିଁ ବ୍ୟକ୍ତିତ୍ୱର ପରାକାଷ୍ଠା ପ୍ରତିଷ୍ଠିତ ହୋଇଥାଏ। ଜବାହାରଲାଲଙ୍କ କ୍ଷେତ୍ରରେ ତାହାହିଁ ସତ୍ୟ ଭାବରେ ରୂପଲାଭ କରିଛି। ତୂଳୀତଳ୍ପର ସୁକୋମଳ ପରିବେଶ ଭିତରୁ କଠୋର ସଂଗ୍ରାମୀ ଜୀବନକୁ ଆଦରି ନେଲାବେଳେ ଜବାହାର ଦୃଢ଼ସଂକଳ୍ପ ନେଇ ଅବତୀର୍ଣ୍ଣ ହୋଇଛନ୍ତି। 'ଆମ ନେହରୁ'ର ପରିକଳ୍ପନା ଭୋଗ ଉପରେ ତ୍ୟାଗର ବିଜୟ ବାର୍ତ୍ତା କିମ୍ବା ପ୍ରତିକୂଳତା ଭିତରେ ବ୍ୟକ୍ତିତ୍ୱ ବିକାଶର ଗରିମା କଥା କେବଳ ପ୍ରକାଶ କରିନାହିଁ; ଏହାର ପରିକଳ୍ପନା ଅନ୍ତରାଳରେ ରହିଛି ପାରମ୍ପରିକ ମାନବାତ୍ମାର ବିଜୟବାର୍ତ୍ତା। ଏଠାରେ ଜବାହାର ଜଣେ କୁଶଳୀ ଜନନେତା କିମ୍ବା ସଫଳ ପ୍ରଶାସକ ଭାବରେ ଯେତେ ଦୃଷ୍ଟି ଆକର୍ଷଣ କରିନାହାନ୍ତି, ତତୋଧିକ ଦୃଷ୍ଟି ଆକର୍ଷଣ କରିଛନ୍ତି ଗଣହୃଦୟର ଯଥାର୍ଥ ପ୍ରତିନିଧି ଭାବରେ। ଜୀବନୀକାର ଉମେଶ ଚରଣ ନେହରୁଙ୍କ ଜୀବନୀକୁ ଉପସ୍ଥାପନ କଲାବେଳେ ଅନେକ ଘଟଣାର ଅବତାରଣା କରିଛନ୍ତି, ଯାହା ବାସ୍ତବିକ ନିଖିଳ ଜନତା ନିମନ୍ତେ ନେହେରୁଙ୍କ ନିବିଡ଼ ଆତ୍ମୀୟତାର ଚିତ୍ର ଉପସ୍ଥାପିତ କରିଥାଏ। ଏପରିକି ଭାରତୀୟ ଜାତୀୟ ଆନ୍ଦୋଳନ ସମୟରେ ନିଖିଳ ଜନତାଙ୍କ ନିମନ୍ତେ ନେହରୁ ଅବତୀର୍ଣ୍ଣ ହୋଇଛନ୍ତି, ନିଜ ପିତାଙ୍କ ବିରୁଦ୍ଧରେ। ତେଣୁ 'ଆମ ନେହରୁ' ଗ୍ରନ୍ଥରେ ନେହରୁଙ୍କ ବ୍ୟକ୍ତିତ୍ୱର ଅନ୍ତରଙ୍ଗ ଚିତ୍ର ଉପସ୍ଥାପିତ।

ଲେଖକଙ୍କ ମତରେ ଭାରତର ସ୍ୱାଧୀନତା ପ୍ରାପ୍ତି ପରେ ପ୍ରଧାନମନ୍ତ୍ରୀ ନେହରୁ ଜଣେ ତୁଙ୍ଗ ରାଷ୍ଟ୍ର ନାୟକ ଭାବେ ସମଗ୍ର ବିଶ୍ୱରେ ଅପ୍ରତିଦ୍ୱନ୍ଦୀ ହୋଇଥାଇ ପାରନ୍ତି; କିନ୍ତୁ ସେ ଆଜି ଆମ ନେହରୁ ହୋଇ ରହିଲେ ନାହିଁ। ନିମ୍ନୋକ୍ତ ଉଦ୍ଧୃତିକି ଲକ୍ଷ୍ୟ କରାଯାଉ; ଆଲୋଚ୍ୟ ଗ୍ରନ୍ଥର ପ୍ରଥମ ଅନୁଚ୍ଛେଦ —

"ଗାନ୍ଧୀ ଚାଲିଗଲେ। ହଜିଗଲା ଦେଶରୁ ଏକତା। ଅଟକିଗଲା ନେହରୁଙ୍କ ସଂଗ୍ରାମ, ତାହାପୁଣି ସବୁଦିନ ପାଇଁ। ତେଣିକି ସେ ହେଲେ

ଭାରତର ପ୍ରଧାନମନ୍ତ୍ରୀ ନେହରୁ । ପୃଥିବୀରେ ପରିଚିତ ହେଲେ ଭାରତର ଜବାହାରଲାଲ ନେହରୁ । ଆମ ନେହରୁ ହୋଇ ଆଉ ସେ ରହିଲେନି । ଆମ ଠାରୁ ଦୂରେଇ ଗଲେ । ଭାରତ ସବୁ ଦିନ ପାଇଁ ହରାଇଲା ଆମ ନେହରୁଙ୍କୁ ।'

ଏଠାରେ ଅନ୍ୟ ଏକ ବିଶେଷ ଲକ୍ଷଣୀୟ କ୍ଷେତ୍ର ହେଲା 'ଆମ ନେହରୁ' ପୁସ୍ତକର ବିଷୟ ବିନ୍ୟାସ ତଥା ଭାଷା ପ୍ରୟୋଗ । ନେହରୁଙ୍କ ଜୀବନକୁ ଅନୁଶୀଳନ କଲାବେଳେ ସ୍ରଷ୍ଟା ଘଟଣାବହୁଳ ଜୀବନ ଭିତରୁ ସେଇ କେତୋଟି ଘଟଣାକୁ ସଂଗ୍ରହ କରିନେଇଛନ୍ତି, ଯାହା ନେହରୁଙ୍କ ବ୍ୟକ୍ତିତ୍ୱର ଅନାଲୋଚିତ ଦିଗକୁ ପାଠକ ଆଗରେ ଉପସ୍ଥାପିତ କରିପାରିଛି । ପ୍ରତ୍ୟେକ ଘଟଣା ନେହରୁଙ୍କ ବ୍ୟକ୍ତିତ୍ୱକୁ ପାଠକ ଆଗରେ ନୂଆ କରି ଉପସ୍ଥାପିତ କରିବା ସହ ଏକ ନୂତନ ଦିଗନ୍ତର ସନ୍ଧାନ ପ୍ରଦାନ କରିଛି । ପୁସ୍ତକଟିର ଅନ୍ୟ ଏକ ଲକ୍ଷଣୀୟ ବିଶେଷତ୍ୱ ହେଲା ଏହାର ଭାଷା ବିନ୍ୟାସ ପ୍ରଣାଳୀ । ସୃଷ୍ଟି ଧାରାରେ ସ୍ରଷ୍ଟାଙ୍କ କୁଶଳତା ବେଶ୍ ଲକ୍ଷଣୀୟ । ସରଳ ପରିପ୍ରକାଶ ଧାରାରେ ଭାବଗାମ୍ଭୀର୍ଯ୍ୟର ଅପୂର୍ବ କୌଶଳ ବାସ୍ତବିକ୍ ପାଠକକୁ ବିମୁଗ୍ଧ କରିଥାଏ । ଉପସ୍ଥାପନାର ସ୍ତରେ ସ୍ତରେ ସରଳ ଓ ତରଳ ଭାବଧାରା ସମଗ୍ର ସୃଷ୍ଟିକୁ କରିଛି ଛନ୍ଦାୟିତ ।

— ଚାରି —

ପଣ୍ଡିତ ନେହରୁଙ୍କୁ ନେଇ ଅନେକ ଜୀବନୀ ଗ୍ରନ୍ଥ ଓ ସ୍ମରଣିକା ଓଡ଼ିଆ ଭାଷାରେ ପ୍ରକାଶିତ । ତେବେ ଘଟଣା ବିନ୍ୟାସ, ଭାଷାଶୈଳୀ, ଉପସ୍ଥାପନା ପଦ୍ଧତି ଆଦି ବିଭିନ୍ନ ଦୃଷ୍ଟି କୋଣରୁ 'ଆମ ନେହରୁ' ଗ୍ରନ୍ଥର ସ୍ଥାନ ସ୍ୱତନ୍ତ୍ର । ଜାତୀୟ ଜୀବନକୁ ଅନୁଧ୍ୟାନ କଲେ ଜଣାଯାଏ ଯୁଗେ ଯୁଗେ ମହାନ୍ ବ୍ୟକ୍ତିତ୍ୱମାନଙ୍କ ଦ୍ୱାରା ମାନବୀୟ ପରଂପରା ପରିପୁଷ୍ଟ ହୋଇଛି, ଲୋକ ଜୀବନ ହୋଇଛି ସମୃଦ୍ଧ ଓ ଶୃଙ୍ଖଳିତ । ସେଥିପାଇଁ ମହାପୁରୁଷ-ମାନଙ୍କ ସାଧନାସିଦ୍ଧ ତ୍ୟାଗପୂତ ଜୀବନାଦର୍ଶକୁ ପାଥେୟ କରି ଅନେକ ଜୀବନୀ ଗ୍ରନ୍ଥ ପ୍ରକାଶିତ । ଏହି ପରଂପରାର ଉତ୍ତର ସାଧକ ଉମେଶ ଚରଣଙ୍କ ସୃଷ୍ଟି ଏ ଦିଗରେ ଏକ ନୂତନ ମାର୍ଗ ଦର୍ଶନ କରିଛି କହିଲେ ଅତ୍ୟୁକ୍ତି ହେବନାହିଁ ।

●

# ॥ ସମର୍ପଣ ॥

ଦୁର୍ଲ୍ଲଭ ଜୀବନର ଛନ୍ଦ
ହଜିଗଲା ଶୂନ୍ୟରୁ ମହାଶୂନ୍ୟକୁ
ସ୍ତବ୍ଧ କରି ଆକାଶ, ପାତାଳ
ଆତ୍ମୀୟ ସ୍ୱଜନ ଅକସ୍ମାତ୍,
ଏବଂ ରଖି ଦେଇଗଲା କିଛି ସ୍ମୃତି
ଦରଦୀ ଭାଷାର ସୁନା ଫରୁଆରେ ।

ତମେ ଖାଲି 'ତମେ' ଥିଲ ତମ ସ୍ୱାଭିମାନ
ଭଲ୍‌ପାଅ ଦୁଃଖ/କେତେ ଆତ୍ମୀୟତା
ଦୂରଦୃଷ୍ଟି ସରଳ ସ୍ୱଭାବ
ସତ୍‌ଚିନ୍ତା/ରାଗ, ଅନୁରାଗ
ସ୍ୱର୍ଣ୍ଣାଭ ସକାଳ ପରି ମୂଲ୍ୟାଙ୍କନ କରୁଥିଲ
ଝଟସ୍ ଏ ପୃଥିବୀ କୁ, ଅଶାନ୍ତ ଏ ମଣିଷକୁ ଭଲେ ।

କିଏ ଜାଣେ କେଉଁଠି କି ଗଲ ତମେ
ବୋଧହୁଏ ଫିବାର ନଥିଲ
ହୁଏତ ଲୁଚିଛ ଆମ ଗହଣରେ
ଭ୍ରମ ସୃଷ୍ଟି ହୁଏ ବାସ୍ତବିକ୍ !
ଆଜି ବି ଲମ୍ବିଛି ତମ ଛାଇ
ବନ୍ଧୁତ୍ୱର ବନ୍ଧନଠୁଁ ଦୂର ଦୂରାନ୍ତରେ
ଅତ୍ୟନ୍ତ ଉଜ୍ଜ୍ୱଳ ଭଳି ଧ୍ରୁବତାରା ପରି
ଅନ୍ଧାରର ଆକାଶରେ ବିଶ୍ୱାସର ଚିହ୍ନ ।

ସବୁଜ ସ୍ୱାକ୍ଷର ପରି ତମ କୃତି
ସୃଷ୍ଟି ଓ ସମ୍ଭାର ସାହିତ୍ୟର ବିସ୍ତୃତ ଅଙ୍ଗନେ
ଟିକ୍ ଟିକ୍ ଦିଶୁଛି ଦିଶିବ ଆଗାମୀରେ
ଏ ଜାତି ସ୍ମରିବ ନିଶ୍ଚେ
ନିଜସ୍ୱ ଗୌରବ ପାଇଁ
ସମ୍ମାନିତ କରି ତୁମ ବହୁମୁଖୀ ପ୍ରଚଣ୍ଡ ପ୍ରତିଭା
ସୁତରାଂ, ଶ୍ରଦ୍ଧାଞ୍ଜଳି ଘେନ ହେ ଅମର ଆତ୍ମା
ତୁମ ପାଇଁ ସମର୍ପିତ ଯାହା ।

ବିପିନ ମହାପାତ୍ର
ବ୍ରହ୍ମପୁର

# MY ESTEEMED GUIDE

India in line with other developing countries is struggling hard to achieve its long desired and commited objective of economic independence for strengthening its political freedom. Though we are to go long way to match with the developed countries, we started getting the smelt of western consciousness about environment. We have blindly applied the science and technology of the west without attaching any importances to our own climate and environment of tropical trough. We in India wanted to come in par with the developed countries with a pulse of time without regard to its natural time-cycle, for which unscrupulous exploitation of all environmental resources availed of.

This being the painful reasoning in me, I could not avoid temptation of making a study on ecology and Environment. While such involvement passed on, a serious set-back and bottlenecks surfaced in the study of the science of environment of the coastal belts of Orissa, in the absence of books and guides on coastal science and varied phenomena of Bay of Bengal. Even the Government of Orissa depended upon such experts abroad for port and coastal works in the absence of the such experts with them. One has to naturally get himself lost in the mid-way of study and research of coastal environment. The experts of Water Resources Department of Orissa are helpless in such rare subjects relating to Bay and its coast.

And, I was over-powered with the intuition to know the science and status of the charming, beauteous and wonderful Chilika, close to Bay of Bengal on Orissa Coast, the elegant beauty of which had inspired the Oriya poets in the past to create monumental treasures in Oriya literature, no less in comparison with William Wordsworth or even more. Such poems were the source of acquiring knowledge in my school and texts.

Where there is will—there is way. I came across on article titled 'Ama Kavinko Chilika' in Oriya (means our Poets' Chilika) published in a local magazine in February' 1991. It was written by Engineer Sri Umesh Charan Padhi. This article satisfied my long awaiting desire since the writer had derived the science that is disclosed in line to line of poems on Chilika by the poets of the past. It was equally wonderful and astonishing. The writer had also suggested remedy in nut-shell to save Chilika from further distress. My intuitions got candled.

My approach to the writer of the said article further disclosed that he is not only an eminent engineer but a scientist on coastal environment and an ablest expert on oceanology and coastal science, particularly of Bay of Bengal along the Orissa Coast. His such ability has been acquired through self study and research works continued from 1974 and all through his own resources alone. His article 'Tackling Flood Devastation in Orissa', published in 1977 in Techno Times of an engineering association of Orissa, is a text and authority on Cyclone, Storm, depressions, monsoonal freshets, behaviour of Bay of Bengal and floods in the rivers flowing into the Bay.

Then came his article **Chila, Chilika, Chilamilika** in an Oriya-daily in 1993, that finally induced me to take

up the Environment of Chilika as my Master Thesis for Post Graduate Diploma on 'Ecology and Environment'. This great scientist is my guide to the subject, and his ability and capability is reflected in his Bio-Data. I could fulfil my desire of establishing the fact that all the authorings in the past by eminent writers, either in poem or in article, carry immense scientific values of Environment, including that of from the lines of the epics and Purans that are invogue and usage in India. To a great extent my guide has also disclosed this in his subsequent articles.

I am therefore exteremely grateful and thankful to the eminent scientist Sri Umesh Charan Padhi who had mainly guided me to complete this Master Thesis, titled 'Chilika—An Environmental Monument'. He has also clarified much of fundamentals of oceanology, coastal science and the phenomena, originated in Bay of Bengal. An immortal help and guidance Er. U. C. Padhi has extended to me, amidst his days busy with official works, hours of his own creative thinkings and authorings.

**Er. Biswanath Sahu**
Manager (F.Q A.)
National Thermal Power Corporation,
At/PO.– Kahalgoan
Dist : Bhagalpur (Bihar)